# ଆମ ଓଡ଼ିଆ ବ୍ୟାକରଣ

## ଦ୍ୱିତୀୟ ଭାଗ




ଡକ୍ଟର ଧନେଶ୍ୱର ମହାପାତ୍ର

# ଆମ ଓଡ଼ିଆ ବ୍ୟାକରଣ

(ଦ୍ୱିତୀୟ ଭାଗ)

ଡକ୍ଟର ଧନେଶ୍ୱର ମହାପାତ୍ର



**ଆମ ଓଡ଼ିଆ ବ୍ୟାକରଣ**
(ଦ୍ୱିତୀୟ ଭାଗ)
ଡକ୍ଟର ଧନେଶ୍ୱର ମହାପାତ୍ର

**ପ୍ରକାଶକ: ଆମ ଓଡ଼ିଶା**
୪ ଆର୍‌୧/୨, ୟୁନିଟ୍-୩
ଭୁବନେଶ୍ୱର- ୭୫୧୦୦୧

ମୁଦ୍ରଣ: ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ
ଭୁବନେଶ୍ୱର- ୭୫୧୦୦୭

ପ୍ରଥମ ସଂସ୍କରଣ: ଅଗଷ୍ଟ, ୨୦୧୬



ପ୍ରଚ୍ଛଦ: ମହେଶ୍ୱର ମହାରଣା

ମୂଲ୍ୟ: ଟ. ୫୦/-

**Aama Odia Byakarana**
(Second part)
Dr. Dhaneswar Mahapatra

Publisher: Aama Odisha,
4R 1/2, Unit-3, Bhubaneswar-1
e-mail: aamaodisha@gmail.com

Printer: Sriram Screen Printing
Bhubaneswar-751007

First Print: August, 2016



Cover: Maheswara Maharana

Price: ₹. 50/-

ISBN: 978-93-84213-13-8

# ଆଉ ପଦେ...

ଏଥି ପୂର୍ବରୁ ପ୍ରକାଶ ପାଇଥିବା 'ଆମ ଓଡ଼ିଆ ବ୍ୟାକରଣ'ରେ ପିଲାମାନଙ୍କୁ ବ୍ୟାକରଣର ଯତ୍‌କିଂଚିତ୍ ଧାରଣା ମାତ୍ର ଦିଆଯାଇଛି । ବର୍ତ୍ତମାନ ପ୍ରସ୍ତୁତ ପୁସ୍ତକଟିରେ ସେହି ଧାରଣାକୁ ଟିକିଏ ଅଧିକ ପ୍ରସାରିତ କଲା ଭଳି ବିଷୟମାନ ରହିଛି । ଏହାକୁ ବ୍ୟାକରଣର ଦ୍ୱିତୀୟ ପାହାଚ ବୋଲି କୁହାଯାଇପାରେ । ଏହା ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପିଲାମାନଙ୍କ ନିମନ୍ତେ ଉପଯୋଗୀ ହେବ ।

ବ୍ୟାକରଣ ହେଉଛି ଭାଷାର ଆଲୋଚନା । ଏହି ଆଲୋଚନା ଦ୍ୱାରା ଭାଷାର ଶୁଦ୍ଧତା-ଅଶୁଦ୍ଧତା ଜଣାପଡ଼େ ଏବଂ ଭାବପ୍ରକାଶ ନିମନ୍ତେ ବିଭିନ୍ନ ବାଟ ଦେଖାଯାଏ । ଉଦାହରଣ ସ୍ୱରୂପ- (କ) "ଜଳଚର ପ୍ରାଣୀମାନଙ୍କ ମଧ୍ୟରେ ତିମି ବୃହତ୍ତମ ।", "ପର୍ବତମାନଙ୍କ ମଧ୍ୟରେ ହିମାଳୟ ଉଚ୍ଚତମ ।" ଏହି ବାକ୍ୟ ଦୁଇଟିରେ 'ବୃହତ୍ତମ' ପଦରେ 'ତ୍ତ' ରହିଛି, କିନ୍ତୁ 'ଉଚ୍ଚତମ' ପଦରେ 'ତ' ରହିଛି । ଏହାର କାରଣ ଆମେ ବ୍ୟାକରଣରୁ ଜାଣିପାରିବା । ବ୍ୟାକରଣ ଆମକୁ ଦର୍ଶାଇ ଦେବ ଯେ ବୃହତ୍+ତମ= ବୃହତ୍ତମ, ଉଚ୍ଚ+ତମ= ଉଚ୍ଚତମ । ପ୍ରଥମଟିରେ ଦୁଇଟି 'ତ' ମିଶିବା ହେତୁ 'ତ୍ତ' ହୋଇଛି, କିନ୍ତୁ ଦ୍ୱିତୀୟଟିରେ 'ତ୍ତ' ହେବାର କୌଣସି ଅବକାଶ ନାହିଁ । ଆମେ ଯଦି 'ଉଚ୍ଚତ୍ତମ' ଲେଖିବା ବା 'ବୃହତମ' ଲେଖିବା, ତେବେ ଭୁଲ୍ ହେବ । ଏହିପରି ଶୁଦ୍ଧତା-ଅଶୁଦ୍ଧତା ବିଚାରମାନ ଆମେ ବ୍ୟାକରଣରୁ ପାଉଁ । (ଖ) "ଯେଉଁ କଥାକୁ ପ୍ରକାଶ କରିବା ଉଚିତ ନୁହେଁ, ତାହାକୁ ପ୍ରକାଶ କରିଦେଲେ ବିପତ୍ତି ପଡ଼େ ।" ଯାହାର ବ୍ୟାକରଣରେ ଜ୍ଞାନ ଥିବ, ସେ ଏହି ଉକ୍ତିକୁ ଅନ୍ୟପ୍ରକାରେ କହି ପାରିବ । ଯଥା: "ଅପ୍ରକାଶ୍ୟ କଥାକୁ ପ୍ରକାଶ କରିଦେଲେ ବିପତ୍ତି ପଡ଼େ ।" ଏହିଭଳି ଭାବରେ ବ୍ୟାକରଣ ଜ୍ଞାନର ଆହୁରି ଅନେକ ଅନେକ ଆବଶ୍ୟକତା ରହିଛି ।

ଓଡ଼ିଆ ଭାଷାର ରକ୍ଷଣ, ବିକାଶ ଓ ପ୍ରସାର ନିମନ୍ତେ ସତତ ଉଦ୍ୟମଶୀଳ ତଥା ଓଡ଼ିଶାର ଉନ୍ନତି ନିମନ୍ତେ ସତତ ଚିନ୍ତାଶୀଳ, 'ଆମ ଓଡ଼ିଶା'ର ଅଧ୍ୟକ୍ଷ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ ଏହି ପୁସ୍ତକଟିକୁ ମଧ୍ୟ ପ୍ରକାଶ କରି ପିଲାମାନଙ୍କର ବ୍ୟାକରଣ ଜ୍ଞାନବର୍ଦ୍ଧନରେ ସହାୟକ ହୋଇଛନ୍ତି । ଆମେ ତାଙ୍କୁ ଆମର ହାର୍ଦ୍ଦିକ ସାଧୁବାଦ ଜ୍ଞାପନ କରୁଛୁ ।

ଡକ୍ଟର ଧନେଶ୍ୱର ମହାପାତ୍ର

# ସୂଚିପତ୍ର





# ଲୋକବାଣୀ

ପାଞ୍ଚବର୍ଷର ପିଲାଟିଏ । ଖାଲି ଯୁଦ୍ଧକଥା ଶୁଣିବାକୁ ତାର ମନ । ରାସ୍ତାର ଏ ପାଖୁ ସେ ପାଖଯାଏ ସେ କଦମ ପକାଇ ଚାଲୁଥାଏ । ରାସ୍ତାର ସୈନ୍ୟମାନଙ୍କୁ ଦେଖିଲେ ସେ ନିଜେ ସୈନ୍ୟ ବେଶରେ ବାହାରିପଡ଼େ । ତାକୁ ୬ ବର୍ଷ ବେଳେ ତା ମାଆ ତା ପାଇଁ ଗୋଟିଏ ସେନାପତିର ପୋଷାକ ତିଆରି କରିଦେଲେ । ତାର ଆନନ୍ଦ ଦେଖେ କିଏ । ସାଇ ପଡ଼ିଶା ଭାବୁଥାଆନ୍ତି ଏ ପିଲା ନିଶ୍ଚୟ ଭବିଷ୍ୟତରେ ବଡ଼ ସୈନିକ ହେବ । ସତକୁ ସତ ସେ ଫ୍ରାନ୍‌ସର ବଡ଼ ସୈନିକ ଓ ଶେଷରେ ସମ୍ରାଟ ମଧ୍ୟ ହେଲେ । ନାଁ ତାଙ୍କର ନେପୋଲିୟନ । ପ୍ରକୃତରେ କଥାରେ କହନ୍ତି- **ତୁଳସୀ ଦୁଇ ପତ୍ରରୁ ବାସେ** । ଭବିଷ୍ୟତର ଗୁଣ ପିଲାଦିନରୁ ହିଁ ଜଣାପଡ଼ିଯାଏ ।

ଜଣେ ଧନୀ ଲୋକ ବହୁଧନ ଅର୍ଜନ କରି ଶେଷରେ ମରିଗଲେ । ତାଙ୍କର ଏକମାତ୍ର ପୁଅ । ପୁଅ ଭାବିଲା, "ହଁ, ବାପା ତ ମୋ ପାଇଁ ବହୁ ଧନ ସଂପତ୍ତି ରଖିଯାଇଅଛନ୍ତି । ମୋର ପରିଶ୍ରମ କରିବା କଅଣ ଦରକାର ?" ସେ କେବଳ ଖର୍ଚ୍ଚ କରି ଚାଲିଲା । ବିଳାସ ଓ ଆଡ଼ମ୍ବରରେ ଦିନ କାଟିଲା । ଉପାର୍ଜନ ପ୍ରତି ଦୃଷ୍ଟି ନଦେବାରୁ ଧନ ସଂପତ୍ତି ସବୁ କ୍ଷୟ ହେଲା । **ବସି ଖାଇଲେ ନଈବାଲି ସରେ** । ଉପାର୍ଜନ ଶକ୍ତି ଥାଇ ମଧ୍ୟ ଯଦି ଆଳସ୍ୟରେ ଜୀବନ କଟାଅ, ତେବେ ନଈବାଲି ପରି ଅସରନ୍ତି ସମ୍ପତ୍ତି ଥିଲେ ମଧ୍ୟ ଶେଷ ହୋଇଯାଏ ।

ଥରେ ଜଣେ ରାଜକୁମାର ଏକାକୀ ଜଙ୍ଗଲରେ ଶିକାର କରୁକରୁ ବାଟବଣା ହୋଇଗଲେ । ସେ ଗୋଟିଏ ଗଛ ତଳେ ଟିକିଏ ବିଶ୍ରାମ କଲାବେଳେ ଉପରୁ ଗୋଟାଏ ଫଳ ତାଙ୍କ ମୁଣ୍ଡ ଉପରେ ପଡ଼ିଗଲା । ତାଙ୍କ ଆଖି ଉପର ପତା ଟିକିଏ ଖଣ୍ଡିଆ ହୋଇଗଲା । ସେ କଷ୍ଟ ପାଇଲେ । କିଛି ସମୟ ପରେ ଦଳେ ଡକାୟତ ସେ

ବାଟେ ଯାଉଥିଲେ । ସେମାନେ ଗୋଟିଏ ସୁନ୍ଦର ପୁରୁଷ ଦୁର୍ଗାଙ୍କ ନିକଟରେ ବଳି ଦେବାକୁ ଖୋଜୁଥିଲେ । ହଠାତ୍ ଏ ଯୁବକକୁ ଦେଖି ବଳିଦେବା ଉଦ୍ଦେଶ୍ୟରେ ତାକୁ ଘେରିଗଲେ । ମାତ୍ର ଡକାୟତଙ୍କ ଭିତରୁ ଜଣେ କହିଲା, "ନାଇଁ, ନାଇଁ, ଏ ହେବ ନାହିଁ । ଏହାର ଆଖି ପାଖ ଖଣ୍ଡିଆ ।" ବିଚରା ରାଜକୁମାର ବଞ୍ଚିଗଲେ । ଏଣୁ **ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳପାଇଁ** । ସୁଖ ହେଉ ବା ଦୁଃଖ ହେଉ, ସବୁ ଈଶ୍ୱରଙ୍କ ଦାନ । ଈଶ୍ୱର ମଙ୍ଗଳମୟ ।

ଲେମ୍ବୁ ରସ ଉପକାରୀ । ମାତ୍ର ଲେମ୍ବୁକୁ ବେଶି ଚିପୁଡ଼ିଲେ ପିତାପାଣି ବାହାରେ । ବଞ୍ଚି ରହିବାପାଇଁ ଖାଦ୍ୟ ଦରକାର । ମାତ୍ର ଅତିରିକ୍ତ ଭୋଜନ ଶରୀରକୁ ରୋଗରେ ପକାଏ । ରୋଗପାଇଁ ଔଷଧ ସେବନ ଆବଶ୍ୟକ, ମାତ୍ର ଅତ୍ୟଧିକ ଔଷଧ ସେବନ ରୋଗର ମାତ୍ରାକୁ ବଢ଼ାଏ । ସେହିପରି ଖେଳ ଶରୀରର ହିତ କରେ । ମାତ୍ର ଅତିରିକ୍ତ ଖେଳ ଶରୀରରେ ପୀଡ଼ା ଆଣେ । ଏଣୁ ସମସ୍ତେ କହନ୍ତି- **ଅତି ଲେମ୍ବୁ ଚିପୁଡ଼ିଲେ ପିତା** । କୌଣସି ବିଷୟର ବା ବସ୍ତୁର ଅତିରିକ୍ତ ବ୍ୟବହାର ଅନିଷ୍ଟକର ।

ସେତେବେଳେ ଆମ ଓଡ଼ିଶାରେ ଶେଷ ସ୍ୱାଧୀନ ରାଜା ଥାଆନ୍ତି ମୁକୁନ୍ଦଦେବ । ଏହି ସମୟରେ କଳାପାହାଡ଼ ଯାଜପୁରରେ ପହଞ୍ଚି ମୁକୁନ୍ଦଦେବଙ୍କ ସହିତ ଯୁଦ୍ଧ କଲା । ସେହି ଯୁଦ୍ଧରେ ଆମ ରାଜ୍ୟର ଦୁଇଜଣ ବିଶ୍ୱାସଘାତକ ନିଜର ସ୍ୱାର୍ଥ ହାସଲପାଇଁ ଗୋପନରେ କଳାପାହାଡ଼କୁ ସାହାଯ୍ୟ କଲେ । ଗୃହଛିଦ୍ର ସବୁ ତାକୁ କହିଦେଲେ । ଫଳରେ ଆମ ରାଜା ମୁକୁନ୍ଦଦେବ ପରାସ୍ତ ହେଲେ । ଲୋକେ କହିଲେ, "ଓଡ଼ିଶା କଅଣ ହାରି ଥାଆନ୍ତା, **ଘର ଢିଙ୍କି କୁମ୍ଭୀର ପରା** ।" ନିଜ ଘରେ ଥିବା ବିଶ୍ୱାସଘାତକ ଲୋକ ନିଜ ପରିବାରର ପତନ ଘଟାନ୍ତି । ଏଣୁ କୁହାଯାଏ- **ଅଣ୍ଟି ଛୁରୀ ତଣ୍ଟି କାଟେ** ।

ଥରେ ମୋଗଲ ସମ୍ରାଟ ଆକବର ତାଙ୍କ ସଭାସଦମାନଙ୍କୁ ପଚାରିଲେ, "ବର୍ତ୍ତମାନ ଦିଲ୍ଲୀରେ ପକ୍ଷୀ ସଂଖ୍ୟା କେତେ ?" ସମସ୍ତେ ପରସ୍ପରକୁ ଅନାଇଲେ । ଜଣେ ଚତୁର ଲୋକ କହିଲା, "ସମ୍ରାଟ, ମୋତେ ଦୁଇଦିନ ସମୟ ଦିଅନ୍ତୁ । ମୁଁ ଗଣି ଆସି କହିବି ।" ଦୁଇଦିନ ପରେ ସେ କହିଲା, "ହଜୁର୍, ଦିଲ୍ଲୀରେ ବର୍ତ୍ତମାନ ୯୯ ଲକ୍ଷ ୯୯ ହଜାର ପକ୍ଷୀ ବାସ କରୁଛନ୍ତି ।" ଆକ୍‌ବର କହିଲେ, "ମୁଁ ବର୍ତ୍ତମାନ ଲୋକ ପଠାଇ ଗଣି ଆସିବି ପ୍ରକୃତରେ ସଂଖ୍ୟା କେତେ ? ଯଦି ଅଳ୍ପ ବା ବହୁତ ହୋଇଥାଏ, ତୁମେ କି

ଦଣ୍ଡ ପାଇବ ?" ଲୋକଟି ଉତ୍ତର ଦେଲା, "ମଣିମା, ମୁଁ ଦୁଇଦିନ ତଳେ ଗଣିଥିଲି । ଏହା ଭିତରେ ଦିଲ୍ଲୀ ଆଖପାଖରୁ ଉଡ଼ିଆସି କେତେ ମିଶିଯାଇଥିବେ ବା ଦିଲ୍ଲୀରୁ କେତେ ଚଢ଼େଇ ବାହାରକୁ ମଧ୍ୟ ଚାଲିଯାଇଥିବେ ।" ଆକବର ନୀରବ ରହିଲେ । ଏଣୁ **କହି ଜାଣିଲେ କଥା ସୁନ୍ଦର** । ଯେ କୌଣସି ପ୍ରକାର କଥା ବାଗରେ କହିପାରିଲେ ହୃଦୟଗ୍ରାହୀ ହୁଏ ।

ଉପର ଲିଖିତ କଳା ଅକ୍ଷରରେ ଲେଖାଥିବା ବାକ୍ୟଗୁଡ଼ିକୁ ଲକ୍ଷ୍ୟକର । ଆମେ କଥାଭାଷା ଓ ଲେଖାଲେଖି କଲାବେଳେ ଏହିପରି ବହୁ ବାକ୍ୟ ବ୍ୟବହାର କରିଥାଉଁ । ପ୍ରତ୍ୟେକର ନିର୍ଦ୍ଦିଷ୍ଟ ପ୍ରୟୋଗ ଅଛି । ଏହି ପ୍ରକାର ବିଶିଷ୍ଟ ଅର୍ଥ ଥିବା ଏବଂ ଲୋକଙ୍କ ଦ୍ୱାରା କୁହାଯାଉଥିବା ବାକ୍ୟଗୁଡ଼ିକୁ **ଲୋକବାଣୀ** ବା **ପ୍ରବଚନ** କୁହାଯାଏ ।

ତଳେ ସେହିପରି କେତେଗୁଡ଼ିଏ ଅତି ଜଣାଶୁଣା ଲୋକବାଣୀ ଓ ସେଗୁଡ଼ିକର ଅର୍ଥ ଦିଆଯାଇଅଛି । ସେଗୁଡ଼ିକୁ ଭଲକରି ପଢ଼ ଓ ନିଜ ନିଜର ବାକ୍ୟ କିମ୍ବା ଅନୁଚ୍ଛେଦ ଗଠନ କର ।

**ନାହିଁ ମାମୁଁଠାରୁ କଣା ମାମୁଁ ଭଲ:** (ଆଦୌ କିଛି ନ ଥିବାଠାରୁ ବରଂ ଅଳ୍ପ କିଛି ଥିବା ଭଲ । କୌଣସି ଜିନିଷ ପ୍ରଚୁର ପରିମାଣରେ ନଥିବା ଅପେକ୍ଷା ଅଳ୍ପ କିଛି ଥିବା ଭଲ ।)

**ଅତି ଭକ୍ତି ଚୋରର ଲକ୍ଷଣ:** (ଅନ୍ୟ ପ୍ରତି ଅତି ଭକ୍ତି ବା ଅତି ସ୍ନେହ ଦେଖାଇଲେ ଜାଣିବାକୁ ହେବ ଯେ ଏପରି ଅତି ଭକ୍ତି ଯେ ଦେଖାଉଛି ତାହାର କିଛି ଗୂଢ଼ ଅଭିସନ୍ଧି ରହିଛି ଓ ସ୍ୱାର୍ଥ ହାସଲ କରିବାର ମନୋବୃତ୍ତି ଅଛି ।)

**ଅତି ଲୋଭରେ ତନ୍ତୀ ମରେ:** (ବେଶି ଲୋଭ କରିବା ଉଚିତ ନୁହେଁ । ଅଧିକ ଲୋଭ କରିବାଦ୍ୱାରା ଇଚ୍ଛା କରୁଥିବା ବିଷୟ ତ ମିଳେ ନାହିଁ, ବରଂ ହାତରେ ଥିବା ଜିନିଷ ମଧ୍ୟ ନଷ୍ଟ ହୁଏ ।)

**ଗାଁ କନିଆଁ ସିଙ୍ଘାଣିନାକୀ:** (ଗାଁରେ ଥିବା କନ୍ୟା ଯେତେ ସୁନ୍ଦର ଓ ଗୁଣବତୀ ହେଲେ ମଧ୍ୟ ସମସ୍ତେ ତାକୁ ସିଙ୍ଘାଣିନାକୀ ବୋଲି କହିଲା ପରି ଅତି ପରିଚୟ ସ୍ଥଳରେ ପ୍ରକୃତ ମହତ୍ତ୍ୱ ବୁଝି ହୁଏ ନାହିଁ ।)

**ଏକ ହାତରେ ତାଳି ବାଜେ ନାହିଁ:** (ଦୁଇ ଜଣଙ୍କ ମଧ୍ୟରେ କଳି ହେଲେ ଜଣଙ୍କର ହୁଏତ ଅଧିକ ଦୋଷ ଥାଇପାରେ, ମାତ୍ର ଅନ୍ୟ ଜଣକ ସଂପୂର୍ଣ୍ଣ ନିର୍ଦ୍ଦୋଷ ନୁହେଁ ।)

**ଏକା ମାଘକେ ଶୀତ ଯାଏ ନାହିଁ:** (ସଂସାର ପରିବର୍ତ୍ତନଶୀଳ, ସୁଖ ପରେ ଦୁଃଖ ଓ ଦୁଃଖ ପରେ ସୁଖ ଲାଗି ରହିଛି)

**ଧୀର ପାଣି ପଥର କାଟେ:** (ତରବରରେ ଶୀଘ୍ର କୌଣସି କାମପାଇଁ ଚେଷ୍ଟା କରୁଥିବା ଲୋକ ଅପେକ୍ଷା ରହିରହି ଧୀରେସୁସ୍ଥେ କାମ କରୁଥିବା ଲୋକ ଜୟଯୁକ୍ତ ହୁଏ ।)

**ଶସ୍ତାରେ ହୀନସ୍ତା:** (ଯେଉଁ ଜିନିଷ ଅତି ଶସ୍ତାରେ ସହଜରେ ମିଳେ, ତହିଁରେ କିଛି ନା କିଛି ଦୋଷ ଥାଏ ।)

**ଅଧର୍ମ ବିତ୍ତ, ବଢ଼େ ବହୁତ, ଗଲାବେଳେ ଯାଏ ମୂଳ ସହିତ:** (ଅଧର୍ମ ଓ ଅନ୍ୟାୟରେ ଉପାର୍ଜିତ ଧନସମ୍ପତ୍ତି ଅସ୍ଥାୟୀ । ସମୟ ଆସେ, ସବୁତକ ଧନ ମୂଳରୁ ଯାଏ । ପାପଧନ ପ୍ରାୟଶ୍ଚିତ୍ତରେ ଯାଏ ବୋଲି ସମସ୍ତେ କହନ୍ତି ।)

**ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକିର:** (ମଣିଷର ଭାଗ୍ୟ ପରିବର୍ତ୍ତନଶୀଳ । କେତେବେଳେ ମଣିଷ ଅବସ୍ଥା ଚକ୍ରରେ ରାଜସିଂହାସନ ଲାଭ କରେ ତ ପୁଣି କେତେବେଳେ ଦାଣ୍ଡର ଭିକାରି ହୋଇ ବୁଲେ ।)

**ବଡ଼ ଲୋକଙ୍କୁ ଉତ୍ତର ନାହିଁ:** (ଗଣ୍ୟମାନ୍ୟ ବ୍ୟକ୍ତି ଭୁଲ୍ କଲେ ମଧ୍ୟ ଓ ଦୋଷପୂର୍ଣ୍ଣ କଥା କହିଲେ ମଧ୍ୟ ସେମାନଙ୍କ ସହ ଯୁକ୍ତିତର୍କ କରାଯାଇପାରେ ନାହିଁ ।)

**ଚାଲି ନଜାଣି ବାଟର ଦୋଷ:** (ନିଜର ଦୋଷତ୍ରୁଟି ନିଜେ ଜାଣି ନପାରି ଅନ୍ୟକୁ ଦୋଷ ଦେବା ।)

**ବହୁ ଲୋକରେ ମୂଷା ମରେ ନାହିଁ:** (କୌଣସି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ସଂପାଦନ କରିବାକୁ ଯଦି ବହୁ ଲୋକଙ୍କୁ କୁହାଯାଏ, ତେବେ ସେ କାମ ହୋଇପାରେ ନାହିଁ, କାରଣ କେହି ଯତ୍ନ ନେଇ କାମ କରନ୍ତି ନାହିଁ ।)

**ତୁଣ୍ଡ ବାଇଦ ସହସ୍ର କୋଶ:** (ଲୋକମୁହଁରେ ପ୍ରଚାରିତ ଖବର ସୁନାମ ବା ଦୁର୍ନାମ ହେଉ, ସହଜରେ ଅତିଶୀଘ୍ର ବ୍ୟାପିଯାଏ ।)

**ଅତି ଗର୍ବେ ହତା ଲଙ୍କା:** (ଗର୍ବ ସମସ୍ତ ଅନିଷ୍ଟର ମୂଳ । ଲଙ୍କାର ରାଜା ରାବଣ ଏତେ ପ୍ରତାପଶାଳୀ ଥାଇ ମଧ୍ୟ ଅତ୍ୟଧିକ ଗର୍ବ ହେତୁ ତାର ବଂଶ ଲୋପପାଇଲା ଓ ସୁନାର ଲଙ୍କା ନଷ୍ଟ ହୋଇଗଲା ।)

**ସେ ଡାଳେ ଡାଳେ ଗଲେ ମୁଁ ପତ୍ରେ ପତ୍ରେ ଯାଏ:** (ସେ ଚତୁର ସତ, ହେଲେ ମୁଁ ତା ଠାରୁ ଅଧିକ ଚତୁର ।)

**ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ:** (ପ୍ରାଣୀ ମାତ୍ରେ ସମସ୍ତେ ଦୈବର ଅଧୀନ । ନିଜ ଇଚ୍ଛାରେ କେହି କିଛି କରୁ ନଥାନ୍ତି, ସମସ୍ତେ ଦୈବଦ୍ୱାରା ପରିଚାଳିତ ହୋଇଥାଆନ୍ତି ।)

**ହାତେ ମାପି ଚାଖଣ୍ଡେ ଚାଲ:** (ଆଗ ଓ ପଛକୁ ଚାହିଁ ସତର୍କତାର ସହିତ ଚାଲ ।)

**ଚିହ୍ନା ବ୍ରାହ୍ମଣର ପଇତା ଲୋଡ଼ା ନାହିଁ:** (ଅତି ପରିଚିତ ବ୍ୟକ୍ତିଙ୍କର ପରିଚୟ ଦେବା ଅନାବଶ୍ୟକ ।)

**ତେଲିଆ ମୁଣ୍ଡରେ ତେଲ:** (ଯେ ଧନୀ ତାକୁ ଅଧିକ ଧନ ଦିଆଯିବା ।)

**ଚକେ ଗଲେ ବାରହାତ:** (କୌଣସିମତେ ସମୟ ଗଡ଼ାଇ ଦେବା । କାଳକ୍ଷେପଣ ନୀତି ।)

## ଅନୁଶୀଳନୀ

୧. 'କ' ସ୍ତମ୍ଭ ସହ 'ଖ' ସ୍ତମ୍ଭ ଯୋଗକର ।

| **'କ' ସ୍ତମ୍ଭ** | **'ଖ' ସ୍ତମ୍ଭ** |
|---|---|
| ଗୋଦରା କୋଡ଼େ ଯେତେ | ଚିଲିକା ମାଛ |
| ଚିହ୍ନା ବ୍ରାହ୍ମଣର | ଦାନା ନଅ ଟଙ୍କା |
| ଗରଜିଲା ମେଘ | ଗଲେ ବି ଧାନ କୁଟେ |
| ପାଣିରେ ଘର କରି | ବଣିଜ ଅଡୁଆ |
| ଘୋଡ଼ା ଛଅ ଟଙ୍କାକୁ | ବ୍ରହ୍ମଜ୍ଞାନ |
| ଅଜାତିକୁ | ବଣିଜ ମଠ |
| ଆକାଶ କଇଁଆ | କୁମ୍ଭୀର ସଙ୍ଗେ କଳି |
| ହାଟ ମଧ୍ୟରେ | ବରଷେ ନାହିଁ |
| ଢିଙ୍କି ସ୍ୱର୍ଗକୁ | ମାଡ଼େ ସେତେ |
| ଚାଷ ତରତର | ପଇତା ଦରକାର ନାହିଁ |

୨. ତଳେ ଲିଭି ଯାଇଥିବା ସ୍ଥାନଗୁଡ଼ିକୁ ଲୋକବାଣୀ ସାହାଯ୍ୟରେ ପୂରଣ କର ।

| | |
|---|---|
| ହାତୀ ଗଳିଯାଏ | ............... |
| କବି ତୁଣ୍ଡ | ............... |
| ଅଳ୍ପ ବିଦ୍ୟା | ............... |
| ଗାଁ ପରିମଳ | ............... |
| କଙ୍କଡ଼ାକୁ | ............... |
| | କାଲ ମାଆ ଜାଣେ |
| | ଠାରୁ କାଣିବା ଭଲ |
| | ଲୁଣ ଖାଏ ହାଣ୍ଡି |
| | ବାରବର୍ଷରେ ସଳଖେ ନାହିଁ |
| ............... | ଗଲାବେଳେ ଯାଏ ମୂଳ ସହିତ |

୩. ଭାବ ବୁଝାଇ ଲେଖ ।

(କ) ଯେଦେଶେ ଯାଇ, ସେ ଫଳ ଖାଇ (ଖ) ଛୋଟ ସାପର ବିଷ ଉତ୍କଟତର (ଗ) କଥା ମାଜିଲେ ମୋଟ (ଘ) ଯେସାକୁ ତେସା (ଙ) ପାଣି ପିଇବ ଛାଣି ପଇସା ନେବ ଗଣି (ଚ) ଜୋର୍ ଯାର ମୁଲକ ତାର (ଛ) ଅତି ପରିଚୟେ ଗୌରବ ନଷ୍ଟ ।



# ସରଳ ବାକ୍ୟ

୧. ସୌରାର ଆନନ୍ଦ **ଦେଖେ** କିଏ ?

୨. ପୂର୍ବେ ସିସିଲି ଦ୍ୱୀପରେ ଜଣେ ପରାକ୍ରମଶାଳୀ ରାଜା **ଥିଲେ** ।

୩. ବସନ୍ତଋତୁରେ ଦକ୍ଷିଣ ଦିଗରୁ ମଳୟ ପବନ **ବହେ** ।

୪. ମୁଁ ଭାତ **ଖାଇ** ସ୍କୁଲ୍‌କୁ **ଯାଏ** ।

୫. ଛାତ ଆଡ଼କୁ **ଚାହିଁଚାହିଁ** ସେ ଚିତ୍ର ଅଙ୍କନରେ ଅଭ୍ୟସ୍ତ **ଥିଲେ** ।

୬. ପିଲାଟି **ଆସୁ ଆସୁ** କାଦୁଅରେ **ପଡ଼ିଗଲା** ।

ଉପରଲିଖିତ ପ୍ରତ୍ୟେକ ବାକ୍ୟରେ ଗୋଟିଏ ଗୋଟିଏ ମାତ୍ର **ସମାପିକା କ୍ରିୟା** ରହିଛି । ସେହି କ୍ରିୟାଗୁଡ଼ିକଦ୍ୱାରା ବାକ୍ୟଗୁଡ଼ିକ ସମାପ୍ତ ହୋଇଛି ବୋଲି ବା ବାକ୍ୟଗୁଡ଼ିକର ଅର୍ଥ ସମାପ୍ତ ହୋଇଛି ବୋଲି ଜଣାଯାଉଛି ।

୧ମ ବାକ୍ୟରେ ସମାପିକା କ୍ରିୟାଟି ହେଲା- ଦେଖେ

୨ୟ ବାକ୍ୟରେ ସମାପିକା କ୍ରିୟାଟି ହେଲା- ଥିଲେ

୩ୟ ବାକ୍ୟରେ ସମାପିକା କ୍ରିୟାଟି ହେଲା- ବହେ

୪ର୍ଥ ବାକ୍ୟରେ ସମାପିକା କ୍ରିୟାଟି ହେଲା- ଯାଏ

୫ମ ବାକ୍ୟରେ ସମାପିକା କ୍ରିୟାଟି ହେଲା- ଥିଲେ

୬ଷ୍ଠ ବାକ୍ୟରେ ସମାପିକା କ୍ରିୟାଟି ହେଲା- ପଡ଼ିଗଲା

କିନ୍ତୁ ୪ର୍ଥ, ୫ମ ଓ ୬ଷ୍ଠ ବାକ୍ୟରେ ଗୋଟିଏ ଗୋଟିଏ ଅଧିକା କ୍ରିୟା ରହିଛି । ସେଗୁଡ଼ିକ ହେଲା-

୪ର୍ଥ ବାକ୍ୟରେ- ଖାଇ

୫ମ ବାକ୍ୟରେ- ଚାହିଁଚାହିଁ

୬ଷ୍ଠ ବାକ୍ୟରେ-  ଆସୁଆସୁ

ଏହି ତିନିଟି କ୍ରିୟା ବାକ୍ୟ ବା ବାକ୍ୟର ଅର୍ଥ ସମାପ୍ତ କରୁ ନଥିବାରୁ ଏଗୁଡ଼ିକ ଗୋଟିଏ ଗୋଟିଏ **ଅସମାପିକା କ୍ରିୟା** । ଏହିପରି ୪ର୍ଥ, ୫ମ ଓ ୬ଷ୍ଠ ବାକ୍ୟଗୁଡ଼ିକରେ ବିଭିନ୍ନ ପ୍ରକାର ଅସମାପିକା କ୍ରିୟା ଥିଲେ ମଧ୍ୟ ସମାପିକା କ୍ରିୟା ମାତ୍ର ଗୋଟିଏ ଗୋଟିଏ । ପ୍ରଥମ ବାକ୍ୟଠାରୁ ଷଷ୍ଠ ବାକ୍ୟ ପର୍ଯ୍ୟନ୍ତ ସବୁଗୁଡ଼ିକ ସରଳ ବାକ୍ୟ । କାରଣ-

**ଯେଉଁ ବାକ୍ୟରେ ଗୋଟିଏ ମାତ୍ର ସମାପିକା କ୍ରିୟା ଥାଏ, ତାହାକୁ ସରଳ ବାକ୍ୟ କୁହାଯାଏ ।**

ରାମ ଓ ଶ୍ୟାମ ସ୍କୁଲ୍‌କୁ ଗଲେ ।

ଏହି ବାକ୍ୟରେ କର୍ତ୍ତା ଦୁଇଟି ହେଲେ ମଧ୍ୟ ସମାପିକା କ୍ରିୟା ଗୋଟିଏ (ଗଲେ) । ଏହା ମଧ୍ୟ ସରଳ ବାକ୍ୟ ।

ଭୁବନେଶ୍ୱର ଓଡ଼ିଶାର ରାଜଧାନୀ ।

ଏହି ବାକ୍ୟରେ ସମାପିକା କ୍ରିୟା 'ଅଟେ' ଉହ୍ୟ ଅଛି । ଅର୍ଥାତ୍, ନଥିଲେ ବି ଅଛି ବୋଲି ଜଣାପଡୁଛି । କେତେକ ବାକ୍ୟରେ ସମାପିକା କ୍ରିୟା ଉହ୍ୟ ଥାଏ । ଉପରଲିଖିତ "ଭୁବନେଶ୍ୱର ଓଡ଼ିଶାର ରାଜଧାନୀ" ମଧ୍ୟ ଏକ ସରଳବାକ୍ୟ ।

## ଅନୁଶୀଳନୀ

୧. ନିମ୍ନଲିଖିତ ସରଳ ବାକ୍ୟଗୁଡ଼ିକ ମଧ୍ୟରେ ସମାପିକା ଓ ଅସମାପିକା କ୍ରିୟାଗୁଡ଼ିକୁ ଚିହ୍ନାଅ ।

(କ) ସେ ମୋତେ ବନ୍ଧୁ ଭାବରେ ସମ୍ବୋଧନ କଲେ ।

(ଖ) ଅନୁଗ୍ରହ କରି ଏଠାକୁ ଆସନ୍ତୁ ।

(ଗ) ଉପେନ୍ଦ୍ର ଭଞ୍ଜ ଓଡ଼ିଶାର କବିସମ୍ରାଟ ।

(ଘ) ହିମାଳୟ ଭାରତର ଉତ୍ତରରେ ଅବସ୍ଥିତ ।

(ଙ) ରାମ ପିତୃସତ୍ୟ ପାଳନ କରି ଲକ୍ଷ୍ମଣ ଓ ସୀତାଙ୍କ ସହ ବନକୁ ଗଲେ ।

୨. ଅସମାପିକା କ୍ରିୟା ଥାଇ ୫ଟି ସରଳ ବାକ୍ୟର ଉଦାହରଣ ଦିଅ ।

୩. ସମାପିକା କ୍ରିୟା ଉହ୍ୟ ଥାଇ ୫ଟି ବାକ୍ୟ ଲେଖ ।

୪. ସମାପିକା କ୍ରିୟା ସାହାଯ୍ୟରେ ଶୂନ୍ୟସ୍ଥାନ ପୂରଣ କର ।

(କ) ଶିକ୍ଷକ ଛାତ୍ରମାନଙ୍କର ମଙ୍ଗଳ .......... ।

(ଖ) ଗୋପବନ୍ଧୁ ଆମ ଓଡ଼ିଶାର ଜଣେ ପ୍ରାତଃସ୍ମରଣୀୟ ବ୍ୟକ୍ତି .......... ।

(ଗ) ଆକାଶର ତାରାକୁ କିଏ .......... ।

(ଘ) ସର୍ପଠାରୁ ଦୁଷ୍ଟ ଲୋକ ଆହୁରି ନିଷ୍ଠୁର .......... ।

(ଙ) ଜ୍ଞାନୀ ଲୋକେ ସବୁଠାରେ ପୂଜିତ .......... ।

(ଚ) ବାର ଶହ ଶିଳ୍ପୀ କୋଣାର୍କ ମନ୍ଦିର .......... ।

(ଛ) ଆପଣ ଦୟା କରି ଆମ ଘରକୁ .......... ।

୫. ଶୂନ୍ୟସ୍ଥାନରେ ଅସମାପିକା କ୍ରିୟା ଲଗାଅ ।

(କ) ଭାଇ ବସ୍‌ରେ .......... ଗାଁରେ ପହଞ୍ଚିଲେ ।

(ଖ) ବୁଢ଼ା ଲୋକଟି .......... ଥକି ପଡ଼ିଲା ।

(ଗ) ସେ .......... ସତ କଥାଟି କହିଦେଲେ ।

(ଘ) ରମା ଭଲ ରଚନା .......... ପୁରସ୍କାର ପାଇଲା ।

(ଙ) ଆଈ ପୁରାଣ .......... ଶୋଇ ପଡ଼ିଲେ ।



# ଯୌଗିକ ବାକ୍ୟ

୧. ତାଙ୍କର ଅନେକ ଧନ ସଂପତ୍ତି ଥାଏ ଓ ଅନେକ କ୍ରୀତଦାସ ଥାଆନ୍ତି ।

୨. ବନ୍ଧୁ ଦେଶର ଉଦ୍ୟମ ସଫଳ ହେଲା ଏବଂ ତାସକେନ୍ଦ ଚୁକ୍ତି ଫଳରେ ଯୁଦ୍ଧର ଅବସାନ ଘଟିଲା ।

୩. ସାଧନା କଦାପି ବ୍ୟର୍ଥ ହୁଏ ନାହିଁ କି ଦୃଢ଼ପ୍ରତିଜ୍ଞ ମନ ଲକ୍ଷ୍ୟ ପଥରୁ ସହଜରେ ବିଚ୍ୟୁତ ହୁଏନାହିଁ ।

ଲକ୍ଷ୍ୟକଲେ ତୁମ୍ଭେମାନେ ଜାଣିପାରିବ, ଉପର ବାକ୍ୟଗୁଡ଼ିକ ଦୁଇଦୁଇଟି ସରଳ ବାକ୍ୟର ସଂଯୋଗରେ ଗଠିତ । କାରଣ ସେଗୁଡ଼ିକୁ ଆମେ ନିମ୍ନପ୍ରକାରେ ପୃଥକ୍ କରିଦେଇପାରିବା ।

୧. (କ) ତାଙ୍କର ଅନେକ ଧନ ସମ୍ପତ୍ତି ଥାଏ ।
   (ଖ) ତାଙ୍କର ଅନେକ କ୍ରୀତଦାସ ଥାଆନ୍ତି ।

୨. (କ) ବନ୍ଧୁ ଦେଶର ଉଦ୍ୟମ ସଫଳ ହେଲା ।
   (ଖ) ତାସକେନ୍ଦ ଚୁକ୍ତି ଫଳରେ ଯୁଦ୍ଧର ଅବସାନ ଘଟିଲା ।

୩. (କ) ନିଷ୍ଠା ଓ ସାଧନା କଦାପି ବ୍ୟର୍ଥ ହୁଏନାହିଁ ।
   (ଖ) ଦୃଢ଼ପ୍ରତିଜ୍ଞ ମନ ଲକ୍ଷ୍ୟପଥରୁ ସହଜରେ ବିଚ୍ୟୁତ ହୁଏନାହିଁ ।

ଏଥିରୁ ସ୍ପଷ୍ଟ ଯେ ଉଦାହରଣ ବାକ୍ୟଗୁଡ଼ିକରେ ଦୁଇଟି ଲେଖାଏଁ ସରଳ ବାକ୍ୟ ରହିଛି ଏବଂ ସେଗୁଡ଼ିକ 'ଓ', 'ଏବଂ' ଦ୍ୱାରା ଯୋଡ଼ାଯାଇଛି ।

**ଏକାଧିକ ସରଳ ବାକ୍ୟର ସଂଯୋଗରେ ଯେଉଁ ବାକ୍ୟ ଗଠିତ ହୁଏ, ତାହାକୁ ଯୌଗିକ ବାକ୍ୟ କୁହାଯାଏ ।**

ତେଣୁ ଉଦାହରଣ ବାକ୍ୟ ତିନିଟି ଗୋଟିଏ ଗୋଟିଏ ଯୌଗିକ ବାକ୍ୟ ।

ତଳ ବାକ୍ୟଟିକୁ ଲକ୍ଷ୍ୟକର ।

୧. ସେ ଭଲ ନାଚେ, ଗାଏ, ପଢ଼େ ଓ ଖେଳେ ।

ଏହା ମଧ୍ୟ ଗୋଟିଏ ଯୌଗିକ ବାକ୍ୟ । କାରଣ ଏହି ବାକ୍ୟଟି ୪ଟି ସରଳ ବାକ୍ୟଦ୍ୱାରା ଗଠିତ ।

ସେଗୁଡ଼ିକ ହେଲା-

(କ) ସେ ଭଲ ନାଚେ ।

(ଖ) ସେ ଭଲ ଗାଏ ।

(ଗ) ସେ ଭଲ ପଢ଼େ ।

(ଘ) ସେ ଭଲ ଖେଳେ ।

ଏଣୁ ଯୌଗିକ ବାକ୍ୟରେ ଦୁଇଟିରୁ ଅଧିକ ସରଳ ବାକ୍ୟ ମଧ୍ୟ ରହିପାରେ । ଯୌଗିକ ବାକ୍ୟ ଗଠନରେ 'ଓ' 'ଏବଂ' 'ମାତ୍ର' 'କିନ୍ତୁ' 'କିମ୍ବା' 'ନହେଲେ' 'ନଚେତ୍' 'ପୁଣି' 'ବା' ପ୍ରଭୃତି ବ୍ୟବହୃତ ହୁଅନ୍ତି । ତଳଲିଖିତ ଉଦାହରଣଗୁଡ଼ିକରେ କଳା ଅକ୍ଷରରେ ଲେଖାଥିବା ପଦଗୁଡ଼ିକୁ ଦେଖ ।

୧. ମୁଁ ତାଙ୍କୁ ଡାକିଲି, **ମାତ୍ର** ସେ ମୋ ଆଡ଼କୁ ଅନାଇଲେ ନାହିଁ ।

୨. ମୁଁ କଟକ ଗଲି, **କିନ୍ତୁ** ସେ ପୁରୀ ଗଲେ ।

୩. କାଲି ସେମାନେ ଖେଳିବେ, **କିମ୍ବା** ଆମେ ଖେଳିବୁ ।

୪. ଯୁଦ୍ଧରେ ଆମେ ସମସ୍ତେ ଜିତିବା, **ନହେଲେ** ମରିବା ।

୫. ଡାକ୍ତରବାବୁ ଆଜି ଆସିଥିଲେ, **ପୁଣି** କାଲି ଆସିବେ ।

୬. କର **ବା** ମର ।

## ଅନୁଶୀଳନୀ

୧. ତଳ ବାକ୍ୟଗୁଡ଼ିକ ମଧ୍ୟରୁ ଯୌଗିକ ବାକ୍ୟଗୁଡ଼ିକୁ ଚିହ୍ନଟକର ।

(କ) ଶିକାରକୁ ଯିବାକଥା ପଡ଼ିଲେ ସୌରା ଭୋକ ଶୋଷ ଭୁଲିଯାଏ ।

(ଖ) ମୋର ହାତଗୋଡ଼ ନାହିଁ, କିନ୍ତୁ ଦେହ ଅଛି, ଆଖି ଅଛି, ଲମ୍ବାଲମ୍ବା ଶାଗୁଆ ଲୋମ ଅଛି ।

(ଗ) ହ୍ରଦରୁ ବଡ଼ବଡ଼ ବରଫଖଣ୍ଡ ଖସିଆସେ ଓ ତାହା ହିଁ ସ୍ଥାନେ ସ୍ଥାନେ ବରଫର ସେତୁ ରଚନାକରେ ।

(ଘ) ବାଘ ନଦେଖିଲେ ବିରାଡ଼ି ଦେଖ ।

(ଙ) ଗୌତମ ରାଜପୁତ୍ର ଥିଲେ, ମାତ୍ର ଭୋଗବିଳାସ ପ୍ରତି ତାଙ୍କର ଆଗ୍ରହ ନଥିଲା ।

୨. ତଳେ ଦିଆଯାଇଥିବା ସରଳ ବାକ୍ୟଗୁଡ଼ିକୁ 'କିନ୍ତୁ' 'ଓ' 'ପୁଣି' 'ନହେଲେ' 'ବା' ଦ୍ୱାରା ଯୋଗକରି ଯୌଗିକ ବାକ୍ୟରେ ପରିଣତ କର ।

(କ) ଏବେ ଚାରିଆଡ଼େ ପକ୍କା ଘର ତିଆରି ହେଉଛି । ଲୋକମାନେ ସେଇ ପକ୍କା ଘରେ ରହୁଛନ୍ତି ।

(ଖ) ମୁଁ ଆଜି ଯିବି । ନିଶ୍ଚୟ କାଲି ଯିବି ।

(ଗ) ତୁମେ ଯାଅ । ତୁମ ଭାଇଙ୍କୁ ପଠାଅ ।

(ଘ) ସେ ଭଲ ଖେଳେ । ସେ ଭଲ ପଢ଼େ ନାହିଁ ।

(ଙ) ମୁଁ ତୁମ ଘରକୁ ଯିବି । ତୁମକୁ ଡାକି ଆଣିବି ।



# ଜଟିଳ ବାକ୍ୟ

୧. ଆପଣ ଯଦି କହିବେ, ମୁଁ ଆସନ୍ତାକାଲି ନିଶ୍ଚୟ ସମ୍ବଲପୁର ଯିବି ।

୨. ଯେତେବେଳେ ସୂର୍ଯ୍ୟ ଅସ୍ତ ହୁଅନ୍ତି, ପକ୍ଷୀମାନେ ବସାକୁ ଫେରନ୍ତି ।

୩. ଯେ ଦେଶ ସେବା କରେ, ସେ ପ୍ରଶଂସା ପାଏ ।

ଉପରଲିଖିତ ଉଦାହରଣଗୁଡ଼ିକରେ ଏକାଧିକ ବାକ୍ୟ ରହିଛି । ସେଗୁଡ଼ିକୁ ଭାଗଭାଗ କଲେ ହେବ–

୧. (କ) ଆପଣ ଯଦି କହିବେ

(ଖ) ମୁଁ ଆସନ୍ତାକାଲି ନିଶ୍ଚୟ ସମ୍ବଲପୁର ଯିବି

୨. (କ) ଯେତେବେଳେ ସୂର୍ଯ୍ୟ ଅସ୍ତ ହୁଅନ୍ତି

(ଖ) ପକ୍ଷୀମାନେ ବସାକୁ ଫେରନ୍ତି

୩. (କ) ଯେ ଦେଶ ସେବା କରେ

(ଖ) ସେ ପ୍ରଶଂସା ପାଏ

ବର୍ତ୍ତମାନ ଲକ୍ଷ୍ୟକଲେ ଜାଣିପାରିବ ୧ମ ବାକ୍ୟର 'ଖ' ଅଂଶଟି ମୁଖ୍ୟ ବାକ୍ୟ, ଏବଂ 'କ' ଅଂଶଟି 'ଖ' ଉପରେ ନିର୍ଭର କରୁଛି । ସେହିପରି ୨ୟ ଓ ୩ୟ ବାକ୍ୟରେ 'ଖ' ବାକ୍ୟଗୁଡ଼ିକ ମୁଖ୍ୟ ଏବଂ 'କ' ବାକ୍ୟଗୁଡ଼ିକ 'ଖ' ବାକ୍ୟ ଉପରେ ନିର୍ଭର କରୁଅଛନ୍ତି । ନିର୍ଭର କରୁଥିବା ଏହି ବାକ୍ୟଗୁଡ଼ିକୁ **ନିର୍ଭରଶୀଳ ବାକ୍ୟ** ବା **ଆଶ୍ରିତ ବାକ୍ୟ** କୁହାଯାଇପାରେ । ଉପରଲିଖିତ ଉକ୍ତିଗୁଡ଼ିକ ଜଟିଳବାକ୍ୟ । କାରଣ–

**ଯେଉଁବାକ୍ୟରେ ଗୋଟିଏ ମୁଖ୍ୟ ବାକ୍ୟ ଥାଏ ଏବଂ ଅନ୍ୟ ବାକ୍ୟ ଉକ୍ତ ମୁଖ୍ୟ ବାକ୍ୟଟିକୁ ଆଶ୍ରୟ କରି ରହିଥାଏ, ତାହାକୁ ଜଟିଳ ବାକ୍ୟ କୁହାଯାଏ ।**

ଆଶ୍ରିତବାକ୍ୟଗୁଡ଼ିକରେ ସାଧାରଣତଃ 'ଯେ' 'ଯେଉଁ' 'ଯାହାକୁ', 'ଯଦି', 'ଯେଉଁଠାରେ' 'ଯେହେତୁ' 'ଯେତେବେଳେ' 'ଯେମିତି' ପ୍ରଭୃତିର ପ୍ରୟୋଗ ଦେଖାଯାଏ । ଆଶ୍ରିତ ବାକ୍ୟ ଶେଷରେ ଗୋଟିଏ କମା (,) ରହେ ।

## ଅନୁଶୀଳନୀ

୧. ତଳେ ଦିଆଯାଇଥିବା ଜଟିଳବାକ୍ୟଗୁଡ଼ିକରୁ ମୁଖ୍ୟ ବାକ୍ୟ ଓ ନିର୍ଭରଶୀଳ ବାକ୍ୟଗୁଡ଼ିକୁ ଚିହ୍ନାଅ ।

(କ) ଗୋପାଳକୃଷ୍ଣ ଯେତେବେଳେ ବାର୍ଦ୍ଧକ୍ୟରେ ଉପନୀତ, ସେତିକିବେଳେ ତାଙ୍କର ପୁଅ ଦୁଇଟିଙ୍କର ଅକାଳ ମୃତ୍ୟୁ ହେଲା ।

(ଖ) ବାଘ ଠିକ୍ କେଉଁଠି ଛପି ରହିଛି, ଏହା ଜାଣିବା ପ୍ରଥମେ ଆବଶ୍ୟକ ।

(ଗ) ମୂର୍ତ୍ତିଟି ଏତେ ମନୋଜ୍ଞ ହେଲା ଯେ ତାହା ଯୋଗେ ମାଇକେଲ୍ ଏଞ୍ଜେଲୋ ପୃଥିବୀର ଜଣେ ଶ୍ରେଷ୍ଠ ଭାସ୍କର ରୂପେ ପ୍ରତିଷ୍ଠା ଲାଭ କଲେ ।

(ଘ) ଯେପରି ବୁଣିବ, ସେପରି କାଟିବ ।

(ଙ) ଯଦି ଏଠାକୁ ଆସିବ, ମୁଁ ତୁମକୁ ସାହାଯ୍ୟ କରିବି ।

୨. ତଳ ଲିଖିତ ବାକ୍ୟଗୁଡ଼ିକ ମଧ୍ୟରୁ ଜଟିଳବାକ୍ୟଗୁଡ଼ିକୁ ଚିହ୍ନାଅ ।

(କ) ମୁଁ ତୁମ ଓଡ଼ିଶାର ବଣରେ ଥାଏଁ, ଗାଁ ଗଣ୍ଡାରେ ଥାଏଁ ।

(ଖ) ମାଇକେଲ୍ ଦୁଃଖରେ ଭାଙ୍ଗିପଡ଼ି ବିଭିନ୍ନ ସହର ପର୍ଯ୍ୟଟନରେ ବାହାରିଲେ ।

(ଗ) ମୋର ଯଦି ଚଢ଼େଇ ପରି ଡେଣା ଥାଆନ୍ତା, ମୁଁ ଦେଶ ପରେ ଦେଶ ଉଡ଼ି ବୁଲନ୍ତି ।

(ଘ) ଯେ ଏ ପ୍ରଶ୍ନର ଉତ୍ତର ଦେବ, ସେ ପୁରସ୍କାର ପାଇବ ।

(ଙ) ସମସ୍ତେ ଜାଣନ୍ତି, ପୃଥିବୀ ଗୋଲାକାର ।

(ଚ) ଯେଉଁଆଡ଼େ ସେ କୁହୁକବାଲା ଯାଉଥାଏ, ପିଲାମାନେ ତା ପଛେ ପଛେ ଯାଉଥାଆନ୍ତି ।

(ଛ) ଆଜି ରାତିରେ ବର୍ଷା ହେବ, ଏହା ରେଡ଼ିଓ କହିଛି ।



# ସରଳ ବାକ୍ୟର ବିଶ୍ଳେଷଣ

୧. ଶିକ୍ଷକ ବ୍ୟାକରଣ ପଢ଼ାଉଅଛନ୍ତି ।

୨. ଚିଲିକା ସୌନ୍ଦର୍ଯ୍ୟପ୍ରେମୀଙ୍କୁ ଆକର୍ଷଣ କରେ ।

ଉପରଲିଖିତ ୧ମ ବାକ୍ୟରେ ଶିକ୍ଷକଙ୍କୁ ଉଦ୍ଦେଶ୍ୟ କରି କିଛି କୁହାଯାଇଛି । 'ଶିକ୍ଷକ' ଏ ବାକ୍ୟର **ଉଦ୍ଦେଶ୍ୟ** । ତା ପରେ ଶିକ୍ଷକଙ୍କ ବିଷୟରେ କହିବାକୁ ଯାଇ ବ୍ୟାକରଣ ପଢ଼ାଇବା କଥାଟି କୁହାଯାଇଛି । ଫଳରେ 'ବ୍ୟାକରଣ ପଢ଼ାଉ ଅଛନ୍ତି' ଅଂଶଟି **ଉଦ୍ଦିଷ୍ଟ** ।

**ବାକ୍ୟରେ ଯାହାକୁ ଉଦ୍ଦେଶ୍ୟ କରି କିଛି କୁହାଯାଏ, ତାହା ଉଦ୍ଦେଶ୍ୟ ଏବଂ ଉଦ୍ଦେଶ୍ୟ ବିଷୟରେ ଯାହା କୁହାଯାଏ, ତାହା ଉଦ୍ଦିଷ୍ଟ । 'ଉଦ୍ଦିଷ୍ଟ'ର ଅନ୍ୟନାମ ବିଧେୟ ।**

ସେହିପରି ୨ୟ ବାକ୍ୟରେ 'ଚିଲିକା' ଉଦ୍ଦେଶ୍ୟ ଓ ଚିଲିକା ସମ୍ବନ୍ଧରେ କହିବାକୁ ଯାଇ 'ସୌନ୍ଦର୍ଯ୍ୟପ୍ରେମୀଙ୍କୁ ଆକର୍ଷଣ କରେ' କଥାଟି କୁହାଯାଇଛି । ଏଣୁ ଏହି ଦ୍ୱିତୀୟ ଅଂଶଟି ବାକ୍ୟର ଉଦ୍ଦିଷ୍ଟ ବା ବିଧେୟ ।

ସାଧାରଣତଃ 'ଉଦ୍ଦେଶ୍ୟ' ଅଂଶଟି ବାକ୍ୟର ଆରମ୍ଭରେ ଥାଏ ଓ 'ଉଦ୍ଦିଷ୍ଟ' ଅଂଶଟି ବାକ୍ୟର ଶେଷ ଆଡ଼କୁ ଥାଏ । ଉପର ଦୁଇଟି ବାକ୍ୟରୁ ଏହା ତୁମେ ଲକ୍ଷ୍ୟ କରିପାରିବ । ମାତ୍ର ସବୁବେଳେ ଯେ ଉଦ୍ଦେଶ୍ୟ ପ୍ରଥମେ ଥାଏ, ତା ନୁହେଁ, ଠାଏ ଠାଏ ଉଦ୍ଦିଷ୍ଟ ମଧ୍ୟ ଆଗେ ରହି ପଛରେ ଉଦ୍ଦେଶ୍ୟ ରହିଥାଏ । ତଳ ଉଦାହରଣଟିକୁ ଲକ୍ଷ୍ୟକର ।

ଖାଲି ଶୁଭୁଥାଏ ପବନର ସୁ ସୁ ଶବ୍ଦ ।

ଏଠାରେ 'ପବନର ସୁ ସୁ ଶବ୍ଦ' ଉଦ୍ଦେଶ୍ୟଟି ବାକ୍ୟର ଶେଷ ଭାଗରେ ଓ 'ଖାଲି ଶୁଭୁଥାଏ' ଉଦ୍ଦିଷ୍ଟଟି ବାକ୍ୟର ଆରମ୍ଭରେ ରହିଛି ।

ଉଦ୍ଦେଶ୍ୟ ଓ ଉଦ୍ଦିଷ୍ଟ ସହ ଅନ୍ୟ ପଦ ସବୁ ମଧ୍ୟ ମିଶି ବାକ୍ୟକୁ ପ୍ରସାରିତ କରନ୍ତି । ତଳେ ଦିଆଯାଇଥିବା ଉଦାହରଣଗୁଡ଼ିକୁ ଲକ୍ଷ୍ୟକର । ପ୍ରସାରିତ 'ଉଦ୍ଦେଶ୍ୟ' ମଧ୍ୟରେ ମୁଖ୍ୟ ଅଂଶଟି ହେଉଛି କର୍ତ୍ତା ଏବଂ ପ୍ରସାରିତ 'ଉଦ୍ଦିଷ୍ଟ' ମଧ୍ୟରେ ମୁଖ୍ୟ ଅଂଶଟି ହେଉଛି କ୍ରିୟା ।

୧. ସ୍କୁଲର ସବୁଠାରୁ ଅଭିଜ୍ଞ ଶିକ୍ଷକ ବ୍ୟାକରଣ ପଢ଼ାଉଅଛନ୍ତି ।

୨. ଚିଲିକା ଦେଶ ବିଦେଶର ଅଗଣନ ସୌନ୍ଦର୍ଯ୍ୟପ୍ରେମୀଙ୍କୁ ଆକର୍ଷଣ କରେ ।

ରେଖାଙ୍କିତ ପଦଗୁଡ଼ିକୁ ଯୋଗ କରାଯାଇ ମୂଳ ବାକ୍ୟଦୁଇଟିକୁ ପ୍ରସାରିତ କରାଯାଇଛି । କର୍ତ୍ତାସହ ଯେଉଁ ପଦଗୁଡ଼ିକର ଯୋଗ ହୋଇଛି, ସେଗୁଡ଼ିକ ହେଲା **କର୍ତ୍ତା ପ୍ରସାରକ** ବା **କର୍ତ୍ତା ବିବର୍ଦ୍ଧକ** (ପ୍ରଥମ ବାକ୍ୟର ରେଖାଙ୍କିତ ଅଂଶ) ଏବଂ କ୍ରିୟା ସହ ଯେଉଁପଦଗୁଡ଼ିକର ଯୋଗ ହୋଇଛି, ସେଗୁଡ଼ିକ **କ୍ରିୟା ପ୍ରସାରକ** ବା **କ୍ରିୟା ବିବର୍ଦ୍ଧକ** (୨ୟ ବାକ୍ୟର ରେଖାଙ୍କିତ ଅଂଶ) ।

ନିମ୍ନରେ କେତୋଟି ସରଳ ବାକ୍ୟ ଦିଆଯାଇଛି । ସରଳ ବାକ୍ୟକୁ କିପରି ବିଶ୍ଳେଷଣ କରାଯାଏ, ତାହା ଦର୍ଶାଯାଇଛି ।

୧. ମଧୁବାବୁ ଆମ ଉତ୍କଳର ଜଣେ କୃତୀ ସନ୍ତାନ ଥିଲେ ।

୨. ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଉତ୍କଳ ଜନନୀ ପ୍ରାକୃତିକ ସଂପଦରେ ପୂର୍ଣ୍ଣ ଅଟେ ।

୩. ବିରାଡ଼ି ଆଖି ବୁଜି କ୍ଷୀର ପିଏ ।

୪. ଲମ୍ବା ଲାଞ୍ଜ ଥିବା ବିରାଡ଼ିଟା ସିଝା କ୍ଷୀର ପିଇଦେଲା ।

୫. ଆମ ସାଇ ପଡ଼ିଶାରେ ବାସ କରୁଥିବା ବୁଢ଼ୀମାଉସୀ ଭଲ ଗପ କହନ୍ତି ।

୬. ଏଠାକୁ ଆସନ୍ତୁ ।

୭. ସେ ପ୍ରତିଦିନ କେବଳ ଫଳ ଖାଆନ୍ତି ।

| ଉଦ୍ଦେଶ୍ୟ | | | ଉଦ୍ଦିଷ୍ଟ | |
|---|---|---|---|---|
| ବାକ୍ୟ | କର୍ତ୍ତାପ୍ରସାରକ | କର୍ତ୍ତା | କ୍ରିୟାପ୍ରସାରକ | କ୍ରିୟା |
| ୧ | - | ମଧୁବାବୁ | ଆମ ଉତ୍କଳର ଜଣେ କୃତୀ ସନ୍ତାନ | ଥିଲେ |
| ୨ | ସୁଜଳା, ସୁଫଳା ଶସ୍ୟଶାମଳା | ଉତ୍କଳଜନନୀ | ପ୍ରାକୃତିକ ସଂପଦରେ ପୂର୍ଣ୍ଣ | ଅଟେ |
| ୩ | - | ବିରାଡ଼ି | ଆଖି ବୁଜି କ୍ଷୀର | ପିଏ |
| ୪ | ଲମ୍ୱାଲାଞ୍ଜ ଥିବା | ବିରାଡ଼ିଟି | ସିଝା କ୍ଷୀର | ପିଇଦେଲା |
| ୫ | ଆମ ସାଇ ପଡ଼ିଶାରେ ବାସକରୁଥିବା | ବୁଢ଼ୀ ମାଉସୀ | ଭଲ ଗପ | କହନ୍ତି |
| ୬ | - | (ଆପଣ) | ଏଠାକୁ | ଆସନ୍ତୁ |
| ୭ | - | ସେ | ପ୍ରତିଦିନ କେବଳ ଫଳ | ଖାଆନ୍ତି |

# ଅନୁଶୀଳନୀ

୧ . ତଳଲିଖିତ ବାକ୍ୟଗୁଡ଼ିକରୁ ଉଦ୍ଦେଶ୍ୟ ଓ ଉଦ୍ଦିଷ୍ଟ ଚିହ୍ନାଇ ଦିଅ ।

(କ) ତହିଁ ଆରଦିନ ଯଥା ସମୟରେ ଭୋଜି ଉତ୍ସବ ଆରମ୍ଭ ହେଲା ।

(ଖ) ବର୍ତ୍ତମାନ ଯାଅ ।

(ଗ) କିଏ ଏ କାମ କରିଛି ?

(ଘ) ଜଙ୍ଗଲରେ ଯାଉ ଯାଉ ହଠାତ୍ ସେ ଗୋଟିଏ ହାତୀ ଦେଖିଲା ।

(ଙ) ଠିକ୍ ମସ୍ତକ ଉପରେ ସୂକ୍ଷ୍ମ କେଶରେ ବନ୍ଧା ହୋଇ ଝୁଲୁଛି ଏକ ତୀକ୍ଷ୍ଣ ଖଡ୍ଗ ।

୨. ନିମ୍ନଲିଖିତ ସରଳ ବାକ୍ୟଗୁଡ଼ିକୁ ଉପର ବର୍ଣ୍ଣିତ 'ଟେବୁଲ' ଆକାରରେ (କର୍ତ୍ତାପ୍ରସାରକ, କର୍ତ୍ତା ଓ କ୍ରିୟାପ୍ରସାରକ, କ୍ରିୟା) ସଜାଇ ଲେଖ ।

(କ) ଜଙ୍ଗଲୀ ସୌରା କଳାହାଣ୍ଡି ଜିଲ୍ଲାର ଏକ ନାମଜାଦା ଶିକାରୀ ।

(ଖ) ତାର କଳା ମଚମଚ ସୁଗଠିତ ଶରୀର ମଧ୍ୟରେ ଅମାପ ଶକ୍ତି ।

(ଗ) ତାର ସାହସ ମଧ୍ୟ କମ୍ ନୁହେଁ ।

(ଘ) ଗୋଟିଏ ଗୁଳିରେ ସେ ହାତୀ ଭଳି ବିଶାଳକାୟ ପ୍ରାଣୀକୁ ମଧ୍ୟ ମାରି ଗଡ଼ାଇଦେଇପାରେ ।

(ଙ) ଜଙ୍ଗଲରେ ମଞ୍ଚା ବାନ୍ଧି ସେ ଶିକାରର ଅପେକ୍ଷା କରେ ।

୩. ତଳ ବାକ୍ୟଗୁଡ଼ିକରେ ଉଦ୍ଦେଶ୍ୟ ଅଂଶକୁ ଓ ଉଦ୍ଦିଷ୍ଟ ଅଂଶକୁ ବଦଳାଇ ଲେଖ ।

(କ) ରହିରହି ଚାଲୁଥାଏ ଦୁର୍ବଳ ରୋଗା ଲୋକଟିଏ ।

(ଖ) ଆମ ମନରେ ଅପୂର୍ବ ଆନନ୍ଦ ଭରିଦେଲା ଶୀତଳ ଜହ୍ନରାତି ।

(ଗ) କ୍ରୀଡ଼ା ପ୍ରତିଯୋଗିତାରେ ପୁରସ୍କାର ପାଇଲେ ବାଳିକା ସ୍କୁଲ୍‌ର ଚାରିଜଣ ଛାତ୍ରୀ ।

(ଘ) ଉତ୍ତମ ହୁଅନ୍ତି ଉତ୍ତମ ପରିବାରର ପିଲା ।

(ଙ) ବୈଦେହୀଶବିଳାସ କାବ୍ୟ ଲେଖିଛନ୍ତି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ।



# କ୍ରିୟାର ବାଚ୍ୟ

୧. (କ) ନିତି ସଞ୍ଜବେଳେ ଆମେ ବ୍ୟାକରଣ ପଢୁଁ ।

(ଖ) ନିତି ସଞ୍ଜବେଳେ ଆମର ବ୍ୟାକରଣ ପଢ଼ାହୁଏ ।

ଏଠାରେ (କ) ଓ (ଖ) ବାକ୍ୟ ମଧ୍ୟରେ କୌଣସି ଅର୍ଥଗତ ପ୍ରଭେଦ ନାହିଁ । କେବଳ ଗଠନଗତ ପ୍ରଭେଦ ରହିଛି । (କ)ରେ 'ଆମେ' କର୍ତ୍ତା ଓ 'ବ୍ୟାକରଣ' କର୍ମ । ଏଥିରେ କ୍ରିୟା 'ପଢୁଁ' ପଦଟି କର୍ତ୍ତା 'ଆମେ' ଅନୁସାରେ ବ୍ୟବହୃତ ହୋଇଛି । ତେଣୁ ଏ ବାକ୍ୟଟି **କର୍ତ୍ତାପ୍ରଧାନ** । ଏ ପ୍ରକାର **କର୍ତ୍ତାପ୍ରଧାନ** ବାକ୍ୟକୁ କର୍ତ୍ତୃବାଚ୍ୟର ବାକ୍ୟ କୁହାଯାଏ । କିନ୍ତୁ (କ) ବାକ୍ୟର କର୍ମ 'ବ୍ୟାକରଣ' ପଦଟି (ଖ) ବାକ୍ୟର କର୍ତ୍ତା ରୂପେ ବ୍ୟବହୃତ ହୋଇଛି ଏବଂ ତାହା ଅନୁସାରେ କ୍ରିୟା 'ପଢ଼ାହୁଏ' ପଦଟି ବ୍ୟବହାର କରାଯାଇଛି । ତେଣୁ ଏ ବାକ୍ୟଟି **କର୍ମପ୍ରଧାନ** । ଏ ପ୍ରକାର **କର୍ମପ୍ରଧାନ** ବାକ୍ୟକୁ କର୍ମବାଚ୍ୟର ବାକ୍ୟ କୁହାଯାଏ । ଏଥିରୁ ତୁମେ ଜାଣିଲ-

**ଯେଉଁ ବାକ୍ୟରେ କର୍ତ୍ତା ଅନୁସାରେ କ୍ରିୟାର ପ୍ରୟୋଗ ହୋଇଥାଏ, ତାହା କର୍ତ୍ତୃବାଚ୍ୟର ବାକ୍ୟ ଏବଂ ଯେଉଁ ବାକ୍ୟରେ କର୍ମ ଅନୁସାରେ କ୍ରିୟାର ପ୍ରୟୋଗ ହୋଇଥାଏ, ତାହା କର୍ମବାଚ୍ୟର ବାକ୍ୟ ।**

ତଳେ କେତୋଟି କର୍ତ୍ତୃବାଚ୍ୟର ବାକ୍ୟକୁ କିପରି କର୍ମବାଚ୍ୟର ବାକ୍ୟରେ ପରିଣତ କରାଯାଇପାରେ, ତାହା ଦେଖାଇ ଦିଆଗଲା ।

| **କର୍ତ୍ତୃବାଚ୍ୟ** | **କର୍ମବାଚ୍ୟ** |
|---|---|
| ୨. (କ) ସେ ଏ କାମ ପାରିବନି । | (ଖ) ତା ଦେଇ ଏ କାମ ହେବନି । |
| ୩. (କ) ରାମ ରାବଣକୁ ନିଧନ କଲେ । | (ଖ) ରାବଣ ରାମଙ୍କଦ୍ୱାରା ନିହତ ହେଲା । |

୪. (କ) ମୁଁ ତା କଥା ଜାଣେ ।     (ଖ) ତା କଥା ମୋତେ ଜଣା ।

୫. (କ) ତୁମେ ରୁଟି ଖାଇ ସାରିଛ ।     (ଖ) ତୁମର ରୁଟିଖିଆ ସରିଛି ।

# ଅନୁଶୀଳନୀ

୧. ତଳ ବାକ୍ୟଗୁଡ଼ିକ ମଧ୍ୟରୁ କେଉଁଗୁଡ଼ିକ କେଉଁ ବାଚ୍ୟର, ଚିହ୍ନେଇ ଦିଅ ।

(କ) ପଣ୍ଡିତେ ପୁରାଣ ପଢୁଛନ୍ତି ।

(ଖ) ବାବୁଲି ହାତରେ କୌଣସି କାମ ହେବନାହିଁ ।

(ଗ) ପାଠ ପଢ଼ିଲେ ତୁମକୁ ଭଲ କର୍ମ ମିଳିବ ।

(ଘ) ସେ ମୋତେ ଅପମାନ ଦେଲେ ।

(ଙ) ଶିକ୍ଷକଙ୍କ ସହ କାଲି ମୋର ଦେଖା ହୋଇଥିଲା ।

୨. ତଳ ବାକ୍ୟଗୁଡ଼ିକର ବାଚ୍ୟ ପରିବର୍ତ୍ତନ କର ।

(କ) ମିନି ଆଜି ସାହିତ୍ୟ ପଢ଼ିନାହିଁ ।

(ଖ) ଗାଆଁକୁ ଗଲେ ନିଲୁ ଦିନରାତି ଖେଳେ ।

(ଗ) ପ୍ରକାଶର ପ୍ରସ୍ତାବଟି ସମସ୍ତେ ଗ୍ରହଣ କଲେ ।

(ଘ) ବର୍ଷା ହେଲେ ଚାଷୀର ଧାନ ବୁଣା ଆରମ୍ଭ ହୁଏ ।

(ଙ) ମନ୍ତ୍ରୀଙ୍କଦ୍ୱାରା ଆମ କ୍ଲବ୍ ଉଦ୍‌ଘାଟିତ ହେବ ।



# ପ୍ରଯୋଜକ କ୍ରିୟା

(କ) ରାମ ଖାଏ ।

(ଖ) ମାଆ ରାମକୁ ଖୁଆନ୍ତି ।

(ଗ) ରାମ ପଢ଼େ ।

(ଘ) ଶିକ୍ଷକ ରାମକୁ ପଢ଼ାନ୍ତି ।

(କ) ବାକ୍ୟଟିରେ କ୍ରିୟା 'ଖାଏ'ର କର୍ତ୍ତା 'ରାମ' ଏବଂ (ଖ) ବାକ୍ୟଟିରେ କ୍ରିୟା 'ଖୁଆନ୍ତି'ର କର୍ତ୍ତା 'ମାଆ' । ଏ ଦୁଇ ବାକ୍ୟରେ ଖାଇବାକାମ 'ରାମ' ହିଁ କରୁଛି । (କ) ବାକ୍ୟଟିରେ ରାମ ନିଜେ ଖାଉଥିବା ବେଳେ (ଖ)ବାକ୍ୟଟିରେ ସେ ମାଆଙ୍କ ପ୍ରଯୋଜନା ହେତୁ ଖାଉଛି । ସେଇପରି (ଗ) ଓ (ଘ) ଉଭୟ ବାକ୍ୟରେ ରାମ ହିଁ ପଢୁଛି । କିନ୍ତୁ (ଗ)ବାକ୍ୟରେ ସେ ନିଜେ ପଢୁଥିବା ବେଳେ (ଘ)ବାକ୍ୟରେ ଶିକ୍ଷକ ତାକୁ ପଢ଼ିବାପାଇଁ ପ୍ରଯୋଜନା ଦେଉଛନ୍ତି । ତେଣୁ (ଖ)ବାକ୍ୟର କ୍ରିୟା 'ଖୁଆନ୍ତି' ଏବଂ (ଘ)ବାକ୍ୟର କ୍ରିୟା 'ପଢ଼ାନ୍ତି' ଦୁଇଟି **ପ୍ରଯୋଜକ କ୍ରିୟା** । ଏଥିରୁ ଜାଣିଲ ଯେ,

**ଯେଉଁ କାର୍ଯ୍ୟ ଜଣକର ପ୍ରଯୋଜନାରେ ଅନ୍ୟଜଣକ ଦ୍ୱାରା ସାଧିତ ହୁଏ, ତାହାକୁ ପ୍ରଯୋଜକ କ୍ରିୟା କୁହାଯାଏ ।**

ଏଇ ପ୍ରଯୋଜକ କ୍ରିୟାକୁ **'ପ୍ରେରଣାର୍ଥକ କ୍ରିୟା'** ଓ **'ଣିଜନ୍ତ କ୍ରିୟା'** ମଧ୍ୟ କୁହାଯାଏ । ତଳେ କେତୋଟି ପ୍ରଯୋଜକ କ୍ରିୟାର ଦୃଷ୍ଟାନ୍ତ ଦିଆଗଲା ।

| କ୍ରିୟା | ପ୍ରଯୋଜକ କ୍ରିୟା | କ୍ରିୟା | ପ୍ରଯୋଜକ କ୍ରିୟା |
|---|---|---|---|
| ଲେଖିବା | ଲେଖାଇବା, ଲେଖେଇବା | ବସିବା | ବସାଇବା, ବସେଇବା |
| କାନ୍ଦିବା | କନ୍ଦାଇବା, କନ୍ଦେଇବା | ଫିଟିବା | ଫିଟାଇବା, ଫିଟେଇବା |
| ହସିବା | ହସାଇବା, ହସେଇବା | କରିବା | କରାଇବା, କରେଇବା |

| କ୍ରିୟା | ପ୍ରଯୋଜକ କ୍ରିୟା | କ୍ରିୟା | ପ୍ରଯୋଜକ କ୍ରିୟା |
|---|---|---|---|
| ରାଗିବା | ରଗାଇବା, ରଗେଇବା | ଚାଖିବା | ଚଖାଇବା, ଚଖେଇବା |
| ଉଠିବା | ଉଠାଇବା, ଉଠେଇବା | ଲାଗିବା | ଲଗାଇବା, ଲଗେଇବା |
| ଦେଖିବା | ଦେଖାଇବା, ଦେଖେଇବା | ଜାଣିବା | ଜଣାଇବା, ଜଣେଇବା |
| ନାଚିବା | ନଚାଇବା, ନଚେଇବା | ଖେଳିବା | ଖେଳାଇବା, ଖେଳେଇବା |
| ଶୁଣିବା | ଶୁଣାଇବା, ଶୁଣେଇବା | ଚାଲିବା | ଚଲାଇବା, ଚଲେଇବା |

## ଅନୁଶୀଳନୀ

୧. ତଳ ବାକ୍ୟଗୁଡ଼ିକରେ କେଉଁଗୁଡ଼ିକ ପ୍ରଯୋଜକ କ୍ରିୟା, ଚିହ୍ନେଇ ଦିଅ ।

(କ) ପିଲାମାନଙ୍କୁ କନ୍ଦାଅ ନାହିଁ ।

(ଖ) ବର୍ଷା ହେଲେ ପିଲାଏ କାଗଜଡଙ୍ଗା ଭସାନ୍ତି ।

(ଗ) କାଳିଆ ଭଲ ଗୀତଟିଏ ଗାଇଲା ।

(ଘ) ଗୁଲୁ ମୋତେ ଭାଲୁ ଧରେଇଲା ।

(ଙ) ରାମ ମଧୁକୁ ଚିଠି ଦେଇଛି ।

୨. ତଳ କ୍ରିୟାଗୁଡ଼ିକୁ ପ୍ରଯୋଜକ କ୍ରିୟାରେ ପରିଣତ କରି ବାକ୍ୟରେ ବ୍ୟବହାର କର ।

| | |
|---|---|
| ଉଠିଲା | ପିଏ |
| ଖାଉଛି | ଲେଖେ |
| ଶିଖିବ | ହସେ |
| ଦେଖୁଥିଲା | ପଢୁଛି |
| କହିବ | ବସନ୍ତୁ |



# ଶବ୍ଦଜ କ୍ରିୟା

୧. ବିଶ୍ୱେଶ୍ୱରାୟା ଏକ ବଡ଼ ଦାୟିତ୍ୱ ମୁଣ୍ଡାଇଲେ ।

୨. ବାଉଁଶଗୁଡ଼ାକ ଗଜେଇଲାଣି ।

୩. ଛୋଟ ପିଲାଟି ପେଟେଇଲାଣି ।

୪. ଲୋକମାନେ ଚୋରଟାକୁ ବାଡ଼ଉଛନ୍ତି ।

୫. ବିଲେଇ ମୂଷାକୁ ଗୋଡ଼ଉଛି ।

ଏହି ଉଦାହରଣଗୁଡ଼ିକରେ କ୍ରିୟାଗୁଡ଼ିକ ହେଲା 'ମୁଣ୍ଡେଇଲେ', 'ଗଜେଇଲାଣି', 'ପେଟେଇଲାଣି', 'ବାଡ଼ଉଛନ୍ତି' ଓ 'ଗୋଡ଼ଉଛି' । 'ମୁଣ୍ଡେଇଲେ' କ୍ରିୟାଟି 'ମୁଣ୍ଡ' ଶବ୍ଦରୁ ଗଠିତ । ସେଇପରି 'ଗଜେଇଲାଣି' କ୍ରିୟାଟି 'ଗଜା' ଶବ୍ଦରୁ ଗଠିତ, 'ପେଟେଇଲାଣି' କ୍ରିୟାଟି 'ପେଟ' ଶବ୍ଦରୁ ଗଠିତ, 'ବାଡ଼ଉଛନ୍ତି' କ୍ରିୟାଟି 'ବାଡ଼ି' ଶବ୍ଦରୁ ଗଠିତ ଏବଂ 'ଗୋଡ଼ଉଛି' କ୍ରିୟାଟି 'ଗୋଡ଼' ଶବ୍ଦରୁ ଗଠିତ ହୋଇଛି । ଅର୍ଥାତ୍ ଏଇ କ୍ରିୟାଗୁଡ଼ିକ ଗୋଟିଏ ଗୋଟିଏ ଶବ୍ଦରୁ ଗଠିତ ବା ଜାତ ହୋଇଛି ।

**ଯେଉଁ କ୍ରିୟା ଶବ୍ଦରୁ ଜାତ ହୋଇଥାଏ, ତାହାକୁ ଶବ୍ଦଜ କ୍ରିୟା କୁହାଯାଏ ।**

ଶବ୍ଦଜ କ୍ରିୟାର ଅନ୍ୟ ନାଁଟି ହେଲା **'ନାମଧାତୁ କ୍ରିୟା'** । ତଳେ କେତେକ ଶବ୍ଦଜ କ୍ରିୟାର ଦୃଷ୍ଟାନ୍ତ ଦିଆଗଲା ।

| **ଶବ୍ଦ** | **ଶବ୍ଦଜ କ୍ରିୟା** |
|---|---|
| ନାକ | ନାକେଇବା |
| କାନ | କାନେଇବା |
| ଆଗ | ଆଗେଇବା |

| | |
|---|---|
| ପଛ | ପଛେଇବା, ପଛାଇବା |
| ଫେଣ | ଫେଣେଇବା, ଫେଣାଇବା |
| ବଙ୍କା | ବଙ୍କେଇବା, ବଙ୍କାଇବା |
| ଆଖି | ଆଖେଇବା |
| ଝାଳ | ଝାଳେଇବା |
| ବାଟ | ବାଟେଇବା |
| ଗୋଡ଼ | ଗୋଡ଼େଇବା, ଗୋଡ଼ାଇବା |
| ମେଲା | ମେଲେଇବା, ମେଲାଇବା |
| ଦୂର | ଦୂରେଇବା |
| ପାଖ | ପାଖେଇବା |
| ତରଳ | ତରଳେଇବା, ତରଳାଇବା |

## ଅନୁଶୀଳନୀ

୧. ତଳ କ୍ରିୟାଗୁଡ଼ିକ କେଉଁ କେଉଁ ଶବ୍ଦରୁ ଗଠିତ ଲେଖ ।

| | |
|---|---|
| ମନେଇବା | ଠୁଳେଇବା |
| ନାକେଇବା | ଘନେଇବା |
| କୁଣ୍ଢେଇବା | ଆଣ୍ଠେଇବା |
| ଧମକେଇବା | ପାଖେଇବା |
| କୁଞ୍ଚେଇବା | ପେଙ୍ଗେଇବା |
| ଝାଳେଇବା | ମୂଳେଇବା |

୨. ତଳ ଶବ୍ଦଗୁଡ଼ିକରୁ ଶବ୍ଦଜ କ୍ରିୟା ଗଠନ କରି ବାକ୍ୟରେ ବ୍ୟବହାର କର ।

ଲମ୍ବା, ମୁଠା, ଗେହ୍ଲା, ଗାର, ଲାଜ, ଟେରା, ତଳ, ଠେଙ୍ଗା, ଦୂର, ଗନ୍ଧ, ଲାଳ, ସଳଖ, ହାତ, ରାଗ, ଠୁଳ ।



# ସମାସ

ଯାହା ସଙ୍ଗେ ଯାହାର ଭଲ ସଂପର୍କ ଥାଏ, ମନରେ କୌଣସି ସଂକୋଚ ନରଖି ସେ ଆପେଆପେ ତା ସହ ମିଶିଯାଏ, ଏହା ଆମ ସମାଜର ଏକ ନିତିଦିନିଆ ଘଟଣା । ଯେକୌଣସି ସାମାଜିକ କ୍ଷେତ୍ରରେ, ମେଳା ମଉଚ୍ଛବରେ, ଯାନିଯାତ୍ରାରେ ଆମେ ଏକାଠି ହେଉ । ଭାବର ଆଦାନପ୍ରଦାନ କରୁ ।

ଠିକ୍ ଆମ ଭାଷାରାଜ୍ୟରେ ମଧ୍ୟ ସେହିପରି । ପରସ୍ପର ସଂପର୍କ ଥିବା ଦୁଇ ବା ତହିଁରୁ ଅଧିକ ପଦ ଏକାଠି ହୁଅନ୍ତି । ଆମେ କହିଲାବେଳେ କିମ୍ବା ଲେଖିଲାବେଳେ 'ମାମୁଁଙ୍କ ଘର', 'ଦାଣ୍ଡର ମଝି', 'ଖିରି ଓ ପିଠା', 'ବିଦ୍ୟାର ଆଳୟ' ନ କହି କହୁଁ 'ମାମୁଁଘର', 'ମଝିଦାଣ୍ଡ', 'ଖିରିପିଠା', 'ବିଦ୍ୟାଳୟ' । ଏଠାରେ ଲକ୍ଷ୍ୟ କଲେ ଜାଣିପାରିବ ଯେ ଏକାଧିକ ପଦ ଏକାଠି ହୋଇଯାଇଛନ୍ତି ।

ପୁଣି ଦ୍ୱିତୀୟ କଥା, ଏଠାରେ ଦେଖିପାରିବ- କିପରି ଖିରି ସହିତ ପିଠାର ମଧୁର ସଂପର୍କ ରହିଛି । କେହି କେବେ 'ଖିରିପାଣି', 'ଖିରିଗୋଡ଼ି', 'ଲୁହାର ଆଳୟ', 'ମାମୁଁଙ୍କର ନଈ', 'ଦାଣ୍ଡର ଡାଳ' କହନ୍ତି ନାହିଁ । କାରଣ ଖିରି ସହିତ ପିଠାର ଯେପରି ସଂପର୍କ, 'ପାଣି' କିମ୍ବା 'ଗୋଡ଼ି'ର ସେପରି ସଂପର୍କ ନାହିଁ । ଏଠାରେ କାହାସହିତ କାହାର ସଂପର୍କ ନ ଥିବାରୁ କେହି କାହା ସହିତ ବସିପାରୁନାହାନ୍ତି ।

ବର୍ତ୍ତମାନ ଆଉ ଦୁଇଟି ଉଦାହରଣ ନେଲେ ଭଲ ରୂପେ ବୁଝିପାରିବ । ଆମେ "ବୀଣା ପାଣିରେ ଯାହାଙ୍କର ତାଙ୍କୁ ପୂଜା କଲୁ" ନକହି ଆମେ ଯଦି କହିବା- "ଆମେ ବୀଣାପାଣିଙ୍କୁ ପୂଜାକଲୁ"- ବାକ୍ୟଟି ସଂକ୍ଷିପ୍ତ ହେଲା ଓ ଶ୍ରୁତିମଧୁର ମଧ୍ୟ ହେଲା ।

ସେହିପରି "ତାଙ୍କ ଘରଟି ଧନ ଓ ଜନ ଓ ଗୋପ ଓ ଲକ୍ଷ୍ମୀରେ ପୂର୍ଣ୍ଣ" ନ କହି ଯଦି କହିବା "ତାଙ୍କ ଘରଟି ଧନଜନଗୋପଲକ୍ଷ୍ମୀରେ ପୂର୍ଣ୍ଣ"- ତାହେଲେ ବାକ୍ୟଟି ପୂର୍ବପରି ସଂକ୍ଷିପ୍ତ ହେବା ସଙ୍ଗେସଙ୍ଗେ କାନକୁ ଭଲ ଶୁଣାଗଲା ।

ଏହିପରି-

**ପରସ୍ପର ସମ୍ବନ୍ଧଯୁକ୍ତ ଏକାଧିକ ପଦକୁ ଏକାଠି ବା ଏକପଦ କରିବାର ନାମ ସମାସ ।**

ମୋଟ ଉପରେ ସମାସର ମୁଖ୍ୟ କାମ ହେଲା ଭାଷାକୁ ସଂକ୍ଷିପ୍ତ ଓ ଶ୍ରୁତିମଧୁର କରିବା ।

ସମାସରେ 'ବୀଣାପାଣି' ପଦଟି ଗଠିତ ହେବା ପୂର୍ବରୁ ଏହାପାଇଁ ଏକ ଲମ୍ବା ଅଂଶ ଦିଆଯାଇଛି । ତାହା ହେଉଛି, 'ବୀଣା ପାଣିରେ ଯାହାଙ୍କର' । ସେହିପରି 'ଧନଜନଗୋପଲକ୍ଷ୍ମୀ' ପାଇଁ ଦିଆଯାଇଛି- ଧନ ଓ ଜନ ଓ ଗୋପ ଓ ଲକ୍ଷ୍ମୀ । ଏହିପରି ସମାସରେ ଯେଉଁ ଦୀର୍ଘ ଉକ୍ତିକୁ ସଂକ୍ଷିପ୍ତ କରାଯାଏ, ତାହାକୁ **ବ୍ୟାସବାକ୍ୟ** ବା **ବିଗ୍ରହବାକ୍ୟ** କୁହାଯାଏ ।

ଉପର ରେଖାଙ୍କିତ ଦୀର୍ଘ ଅଂଶଗୁଡ଼ିକ ଗୋଟିଏ ଗୋଟିଏ **ବ୍ୟାସବାକ୍ୟ** ।

ସମାସରେ କେତେକ ସ୍ଥଳରେ ପରିବର୍ତ୍ତନ ଘଟେ । ତଳ ଉଦାହରଣଗୁଡ଼ିକୁ ଲକ୍ଷ୍ୟକର ।

ଦୀର୍ଘ କାୟା ଯାହାର (ଦୀର୍ଘକାୟ)

ଅନ୍ୟ ମନ ଯାହାର (ଅନ୍ୟମନସ୍କ)

ପଦ୍ମ ନାଭିରେ ଯାହାର (ପଦ୍ମନାଭ)

ଏଠାରେ 'କାୟା', 'ମନ' ଓ 'ନାଭି'ର ପରିବର୍ତ୍ତନ ଘଟିଛି । ଏହିପରି ସମାସରେ କେତେକ ସ୍ଥଳରେ ପରିବର୍ତ୍ତନ ଘଟେ ।

ସମାସ ଛଅ ଭାଗରେ ବିଭକ୍ତ । **ଦ୍ୱନ୍ଦ୍ୱ, କର୍ମଧାରୟ, ତତ୍ପୁରୁଷ, ବହୁବ୍ରୀହି, ଦ୍ୱିଗୁ** ଓ **ଅବ୍ୟୟୀଭାବ** ।

ବର୍ତ୍ତମାନ ପ୍ରତ୍ୟେକ ସମାସ ବିଷୟରେ ଆଲୋଚନା କରାଯାଉଅଛି ।

## ୧- ଦ୍ୱନ୍ଦ୍ୱ ସମାସ

ନିମ୍ନ ଉଦ୍ଧୃତାଂଶଗୁଡ଼ିକୁ ଲକ୍ଷ୍ୟକର ।

(କ) କବି ମନୁଷ୍ୟଜୀବନ ଓ ମନୁଷ୍ୟ ସମାଜର ଭଲମନ୍ଦ, ନ୍ୟାୟ ଓ ଅନ୍ୟାୟକୁ ଦେଖିପାରେ । ଦୁଃଖଦୁର୍ବିପାକ ମଧ୍ୟରେ ହର୍ଷ ଓ ପୁଲକ ସୃଷ୍ଟିକରିପାରେ ।

(ଖ) ଆତପ ସନ୍ତାପେ ସନ୍ତାପିତ ସର୍ବେ ପଶୁପକ୍ଷୀ ଜୀବକୁଳ
ବହେ ସ୍ୱେଦବାରି ସର୍ବେ ନରନାରୀ ଗ୍ରୀଷ୍ମ ସନ୍ତାପେ ଆକୁଳ

ଉପର ରେଖାଙ୍କିତ ପଦଗୁଡ଼ିକ ଗୋଟିଏ ଗୋଟିଏ ସମାସନିଷ୍ପନ୍ନ ପଦ । ଏହାକୁ ଯଦି ଆମେ ବିସ୍ତୃତ କରି କହିବା ଏହା ହେବ ଭଲ ଓ ମନ୍ଦ, ଦୁଃଖ ଓ ଦୁର୍ବିପାକ, ପଶୁ ଓ ପକ୍ଷୀ, ନର ଓ ନାରୀ । ସମାସନିଷ୍ପନ୍ନ ପଦଗୁଡ଼ିକର ଅର୍ଥ ଜାଣିବା ସକାଶେ ଯେଉଁ ଲମ୍ବା ଉକ୍ତି ବ୍ୟବହାର କରାଯାଏ, ତାହାକୁ ବ୍ୟାସବାକ୍ୟ ବା ବିଗ୍ରହବାକ୍ୟ କୁହାଯାଏ ବୋଲି ପୂର୍ବେ ପଢ଼ିଛ ।

ତଳେ ଉପରସୂଚିତ ରେଖାଙ୍କିତ ପଦଗୁଡ଼ିକର ବ୍ୟାସବାକ୍ୟ ସହ ସମାସନିଷ୍ପନ୍ନ ପଦ ଦିଆଯାଇଛି ।

| ବ୍ୟାସବାକ୍ୟ | ସମାସନିଷ୍ପନ୍ନ ପଦ |
|---|---|
| ଭଲ ଓ ମନ୍ଦ | ଭଲମନ୍ଦ |
| ଦୁଃଖ ଓ ଦୁର୍ବିପାକ | ଦୁଃଖଦୁର୍ବିପାକ |
| ପଶୁ ଓ ପକ୍ଷୀ | ପଶୁପକ୍ଷୀ |
| ନର ଓ ନାରୀ | ନରନାରୀ |

ସେହିପରି ଗଛଲତା, ଫୁଲଫଳ, ଦିନରାତି, ଜଳବାୟୁ, ରାଜାରାଣୀ, ପୁଅବୋହୂ, ଧୋତିଚାଦର, ପାନଗୁଆଚୂନ, ଜଳସ୍ଥଳଆକାଶ, ମାମୁଭଣଜା ଇତ୍ୟାଦି ।

ଉପର ଉଦାହରଣ ଗୁଡ଼ିକରୁ ଜଣାଯାଏ ଯେ ଦୁଇ ବା ତହିଁରୁ ଅଧିକ ପଦ ଏକାଠି ହୋଇଛନ୍ତି ।

**ଯେଉଁ ସମାସରେ ଦୁଇ ବା ତହିଁରୁ ଅଧିକ ପଦ 'ଓ' ବା 'ଏବଂ' ଦ୍ୱାରା ଏକାଠି ହୁଅନ୍ତି, ତାହାକୁ ଦ୍ୱନ୍ଦ୍ୱ ସମାସ କୁହାଯାଏ ।**

## ୨- କର୍ମଧାରୟ ସମାସ

ସୁନୀଳଗ୍ରୀବାଟି ଟେକାଇ ଧୀରେ

ସୁମଞ୍ଜୁଳଚୂଳ ଦୋଳାଇ ଶିରେ

ସୁଉଜ୍ଜଳନୟନେ ଜୀମୂତେ ଦେଖି

ଛନଛନମନେ କଳାପ ଟେକି

ଶିଖୀଟିଏ ମାତି

ଫୁଲାଇ ଦେଉଛି ଛବିଳଛାତି

ଏଥିରେ ରେଖାଙ୍କିତ ପଦଗୁଡ଼ିକୁ ଲକ୍ଷ୍ୟକର । ସେଗୁଡ଼ିକର ବ୍ୟାସବାକ୍ୟ ସହ ସମାସନିଷ୍ପନ୍ନ ପଦ ତଳେ ଦିଆଗଲା ।

| ବ୍ୟାସବାକ୍ୟ | ସମାସ ନିଷ୍ପନ୍ନ ପଦ |
|---|---|
| ସୁନୀଳ ଅଟେ ଗ୍ରୀବା | ସୁନୀଳଗ୍ରୀବା |
| ସୁମଞ୍ଜୁଳ ଅଟେ ଚୂଳ | ସୁମଞ୍ଜୁଳଚୂଳ |
| ସୁଉଜ୍ଜଳ ଅଟେ ନୟନ | ସୁଉଜ୍ଜଳନୟନ |
| ଛନଛନ ଅଟେ ମନ | ଛନଛନମନ |
| ଛବିଳ ଅଟେ ଛାତି | ଛବିଳଛାତି |

ଏଠାରେ ବ୍ୟାସବାକ୍ୟଗୁଡ଼ିକୁ ଲକ୍ଷ୍ୟକଲେ ଦେଖିପାରିବ ପ୍ରଥମ ବା ପୂର୍ବପଦ ବିଶେଷଣ ଓ ପରପଦ ବିଶେଷ୍ୟ । **ଏହିପରି ଯେଉଁଠାରେ ପୂର୍ବପଦ ବିଶେଷଣ ଓ ପରପଦ ବିଶେଷ୍ୟ ଥାଇ ସମାସ ହୁଏ, ତାହାକୁ କର୍ମଧାରୟ ସମାସ କୁହାଯାଏ ।**

ନିମ୍ନଲିଖିତ ପଦ୍ୟାଂଶଗୁଡ଼ିକୁ ଲକ୍ଷ୍ୟକର ।

ମହାଦରେ ନେଇ ରାଜା ଇନ୍ଦ୍ରର ନନ୍ଦନେ

ନିଜ ହସ୍ତେ ବସାଇଲେ ରତ୍ନସିଂହାସନେ ।

ସୁନାପ୍ରତିମାଟି ବୁଲେଇ କହେ ଗରବେ ଛଳି

ମାଟିପ୍ରତିମା ଲୋ, ଯିବୁ କି କେବେ ମୋ ତହୁଁ ବଳି ।

ଉପର ରେଖାଙ୍କିତ ସମାସନିଷ୍ପନ୍ନ ପଦଗୁଡ଼ିକର ବ୍ୟାସବାକ୍ୟ ହେଉଛି-

| ବ୍ୟାସବାକ୍ୟ | ସମାସନିଷ୍ପନ୍ନ ପଦ |
|---|---|
| ରତ୍ନନିର୍ମିତ ସିଂହାସନ | ରତ୍ନସିଂହାସନ |
| ସୁନା ତିଆରି ପ୍ରତିମା | ସୁନାପ୍ରତିମା |
| ମାଟି ତିଆରି ପ୍ରତିମା | ମାଟିପ୍ରତିମା |

ବ୍ୟାସବାକ୍ୟରେ ମଝିରେ ଥିବା ପଦସବୁକୁ (ନିର୍ମିତ, ତିଆରି) ଲୋପ କରାଯାଇ ସମାସନିଷ୍ପନ୍ନ ପଦ ଗଠିତ ହୋଇଛି । **ଯେଉଁ କର୍ମଧାରୟ ସମାସରେ ମଝିପଦଟିକୁ ଲୋପ କରାଯାଇଥାଏ ତାହାକୁ ମଧ୍ୟପଦଲୋପୀ କର୍ମଧାରୟ ସମାସ** କୁହାଯାଏ ।

ସେହିପରି ଦହିମିଶା ଚୂଡ଼ା (ଦହିଚୂଡ଼ା), ଗୋଡ଼ିମିଶା ଚାଉଳ (ଗୋଡ଼ିଚାଉଳ), ସୁନା ତିଆରି ହାର (ସୁନାହାର), ବର ନାମକ ଗଛ (ବରଗଛ), ଘିଅ ମିଶା ଭାତ (ଘିଅଭାତ) ପ୍ରଭୃତି ।

ବର୍ତ୍ତମାନ ତଳଲିଖିତ ଉଦାହରଣଗୁଡ଼ିକୁ ଲକ୍ଷ୍ୟକର ।

ପ୍ରାଣପକ୍ଷୀ ଉଡ଼ିଗଲା ମୁଠେ ମାତ୍ର ମାଟି ଅଛି କରେ

ହଂସ ହଂସରାଳି ଖେଳନ୍ତି ଢେଉଦୋଳିରେ ଖେଳ

ଏଠାରେ ରେଖାଙ୍କିତ ପଦଗୁଡ଼ିକୁ ବ୍ୟାସବାକ୍ୟରେ ପରିଣତ କଲେ ଏହିପରି ହେବ– 'ପ୍ରାଣ ରୂପକ ପକ୍ଷୀ' ଓ 'ଢେଉ ରୂପକ ଦୋଳି'

ଏଠାରେ ପ୍ରାଣକୁ ପକ୍ଷୀ ଓ ଢେଉକୁ ଦୋଳି ବୋଲି ମନେ କରାଯାଇଛି ଏବଂ ଦୁହିଁଙ୍କ ମଧ୍ୟରେ କିଛି ଭେଦ ନାହିଁ ବୋଲି ସୂଚାଇ ଦିଆଯାଇଛି । **ଯେଉଁ ସମାସରେ ଦୁଇବସ୍ତୁ ମଧ୍ୟରେ ଅଭେଦ କଳ୍ପନା କରାଯାଏ ଅର୍ଥାତ୍ ଦୁଇଟିକୁ ଏକ ବୋଲି ମନେ କରାଯାଏ, ତାହାକୁ ରୂପକ କର୍ମଧାରୟ ସମାସ କୁହାଯାଏ ।**

## ୩- ତତ୍ପୁରୁଷ ସମାସ

ତଳଲିଖିତ ବାକ୍ୟଗୁଡ଼ିକୁ ପଢ଼ ଓ ରେଖାଙ୍କିତ ପଦଗୁଡ଼ିକୁ ଲକ୍ଷ୍ୟକର ।

(କ) ଗୃହାଗତ ଅତିଥିଙ୍କର ଯଥାସାଧ୍ୟ ସେବା କର ।

(ଖ) ତା ପରେ ସେ ଭାବବିହ୍ୱଳ ପ୍ରାଣରେ ରଚନା କରିଚାଲିଲେ ଗୀତି କବିତା ।

## ୨- କର୍ମଧାରୟ ସମାସ

ସୁନୀଳଗ୍ରୀବାଟି ଢଳାଇ ଧୀରେ

ସୁମଞ୍ଜୁଳଚୂଳ ଦୋଳାଇ ଶିରେ

ସୁଢଳନୟନେ ଜୀମୂତେ ଦେଖି

ଛନଛନମନେ କଳାପ ଟେକି

ଶିଖୀଟିଏ ମାତି

ଫୁଲାଇ ଦେଉଛି ଛବିଳଛାତି

ଏଥିରେ ରେଖାଙ୍କିତ ପଦଗୁଡ଼ିକୁ ଲକ୍ଷ୍ୟକର । ସେଗୁଡ଼ିକର ବ୍ୟାସବାକ୍ୟ ସହ ସମାସନିଷ୍ପନ୍ନ ପଦ ତଳେ ଦିଆଗଲା ।

| ବ୍ୟାସବାକ୍ୟ | ସମାସ ନିଷ୍ପନ୍ନ ପଦ |
|---|---|
| ସୁନୀଳ ଅଟେ ଗ୍ରୀବା | ସୁନୀଳଗ୍ରୀବା |
| ସୁମଞ୍ଜୁଳ ଅଟେ ଚୂଳ | ସୁମଞ୍ଜୁଳଚୂଳ |
| ସୁଢଳ ଅଟେ ନୟନ | ସୁଢଳନୟନ |
| ଛନଛନ ଅଟେ ମନ | ଛନଛନମନ |
| ଛବିଳ ଅଟେ ଛାତି | ଛବିଳଛାତି |

ଏଠାରେ ବ୍ୟାସବାକ୍ୟଗୁଡ଼ିକୁ ଲକ୍ଷ୍ୟକଲେ ଦେଖିପାରିବ ପ୍ରଥମ ବା ପୂର୍ବପଦ ବିଶେଷଣ ଓ ପରପଦ ବିଶେଷ୍ୟ । **ଏହିପରି ଯେଉଁଠାରେ ପୂର୍ବପଦ ବିଶେଷଣ ଓ ପରପଦ ବିଶେଷ୍ୟ ଥାଇ ସମାସ ହୁଏ, ତାହାକୁ କର୍ମଧାରୟ ସମାସ କୁହାଯାଏ ।**

ନିମ୍ନଲିଖିତ ପଦ୍ୟାଂଶଗୁଡ଼ିକୁ ଲକ୍ଷ୍ୟକର ।

ମହାଦରେ ନେଇ ରାଜା ଇନ୍ଦ୍ରର ନନ୍ଦନେ

ନିଜ ହସ୍ତେ ବସାଇଲେ ରତ୍ନସିଂହାସନେ ।

ସୁନାପ୍ରତିମାଟି ବୁଲେଇ କହେ ଗରବେ ଛଳି

ମାଟିପ୍ରତିମା ଲୋ, ଯିବୁ କି କେବେ ମୋ ତହୁଁ ବଳି ।

ଉପର ରେଖାଙ୍କିତ ସମାସନିଷ୍ପନ୍ନ ପଦଗୁଡ଼ିକର ବ୍ୟାସବାକ୍ୟ ହେଉଛି-

| ବ୍ୟାସବାକ୍ୟ | ସମାସନିଷ୍ପନ୍ନ ପଦ |
|---|---|
| ରତ୍ନନିର୍ମିତ ସିଂହାସନ | ରତ୍ନସିଂହାସନ |
| ସୁନା ତିଆରି ପ୍ରତିମା | ସୁନାପ୍ରତିମା |
| ମାଟି ତିଆରି ପ୍ରତିମା | ମାଟିପ୍ରତିମା |

ବ୍ୟାସବାକ୍ୟରେ ମଝିରେ ଥିବା ପଦସବୁକୁ (ନିର୍ମିତ, ତିଆରି) ଲୋପ କରାଯାଇ ସମାସନିଷ୍ପନ୍ନ ପଦ ଗଠିତ ହୋଇଛି । **ଯେଉଁ କର୍ମଧାରୟ ସମାସରେ ମଝିପଦଟିକୁ ଲୋପ କରାଯାଇଥାଏ ତାହାକୁ ମଧ୍ୟପଦଲୋପୀ କର୍ମଧାରୟ ସମାସ** କୁହାଯାଏ ।

ସେହିପରି ଦହିମିଶା ଚୂଡ଼ା (ଦହିଚୂଡ଼ା), ଗୋଡ଼ିମିଶା ଚାଉଳ (ଗୋଡ଼ିଚାଉଳ), ସୁନା ତିଆରି ହାର (ସୁନାହାର), ବର ନାମକ ଗଛ (ବରଗଛ), ଘିଅ ମିଶା ଭାତ (ଘିଅଭାତ) ପ୍ରଭୃତି ।

ବର୍ତ୍ତମାନ ତଳଲିଖିତ ଉଦାହରଣଗୁଡ଼ିକୁ ଲକ୍ଷ୍ୟକର ।

ପ୍ରାଣପକ୍ଷୀ ଉଡ଼ିଗଲା ମୁଠେ ମାତ୍ର ମାଟି ଅଛି କରେ

ହଂସ ହଂସରାଳି ଖେଳନ୍ତି ଢେଉଦୋଳିରେ ଖେଳ

ଏଠାରେ ରେଖାଙ୍କିତ ପଦଗୁଡ଼ିକୁ ବ୍ୟାସବାକ୍ୟରେ ପରିଣତ କଲେ ଏହିପରି ହେବ– 'ପ୍ରାଣ ରୂପକ ପକ୍ଷୀ' ଓ 'ଢେଉ ରୂପକ ଦୋଳି'

ଏଠାରେ ପ୍ରାଣକୁ ପକ୍ଷୀ ଓ ଢେଉକୁ ଦୋଳି ବୋଲି ମନେ କରାଯାଇଛି ଏବଂ ଦୁହିଁଙ୍କ ମଧ୍ୟରେ କିଛି ଭେଦ ନାହିଁ ବୋଲି ସୂଚାଇ ଦିଆଯାଇଛି । **ଯେଉଁ ସମାସରେ ଦୁଇବସ୍ତୁ ମଧ୍ୟରେ ଅଭେଦ କଳ୍ପନା କରାଯାଏ ଅର୍ଥାତ୍ ଦୁଇଟିକୁ ଏକ ବୋଲି ମନେ କରାଯାଏ, ତାହାକୁ ରୂପକ କର୍ମଧାରୟ ସମାସ କୁହାଯାଏ ।**

## ୩- ତତ୍ପୁରୁଷ ସମାସ

ତଳଲିଖିତ ବାକ୍ୟଗୁଡ଼ିକୁ ପଢ଼ ଓ ରେଖାଙ୍କିତ ପଦଗୁଡ଼ିକୁ ଲକ୍ଷ୍ୟକର ।

(କ) ଗୃହାଗତ ଅତିଥିଙ୍କର ଯଥାସାଧ୍ୟ ସେବା କର ।

(ଖ) ତା ପରେ ସେ ଭାବବିହ୍ୱଳ ପ୍ରାଣରେ ରଚନା କରିଚାଲିଲେ ଗୀତି କବିତା ।

(ଗ) ଦଶରଥ ପୁତ୍ରଶୋକରେ ଅଧୀର ହୋଇ ପ୍ରାଣ ବିସର୍ଜନ କଲେ ।

(ଘ) ଗଛଝଡ଼ା ପତ୍ରଗୁଡ଼ିକ ଗଛତଳେ ବିଛାଡ଼ି ହୋଇ ପଡ଼ିଛି ।

(ଙ) ପ୍ରକୃତରେ ସେ ଥିଲେ ଦେଶନିର୍ମାତା ।

(ଚ) ଗଭୀର କର୍ମନିଷ୍ଠା ହେତୁ ସେ ସମ୍ମାନିତ ହେଲେ ।

ଉପର ରେଖାଙ୍କିତ ପଦଗୁଡ଼ିକର ବ୍ୟାସବାକ୍ୟ ନିମ୍ନଲିଖିତ ମତେ ଲେଖାଯାଇପାରେ-

| **ବ୍ୟାସବାକ୍ୟ** | **ସମାସନିଷ୍ପନ୍ନ ପଦ** |
|---|---|
| ଗୃହକୁ ଆଗତ | ଗୃହାଗତ |
| ଭାବରେ ବିହ୍ୱଳ | ଭାବବିହ୍ୱଳ |
| ପୁତ୍ରପାଇଁ ଶୋକ | ପୁତ୍ରଶୋକ |
| ଗଛରୁ ଝଡ଼ା | ଗଛଝଡ଼ା |
| ଦେଶର ନିର୍ମାତା | ଦେଶନିର୍ମାତା |
| କର୍ମରେ ନିଷ୍ଠା | କର୍ମନିଷ୍ଠା |

ଏଠାରେ ପ୍ରତ୍ୟେକ ବ୍ୟାସବାକ୍ୟକୁ ଲକ୍ଷ୍ୟ କଲେ ଦେଖିବ ପୂର୍ବପଦ ବା ପ୍ରଥମପଦର ଶେଷରେ ଯଥାକ୍ରମେ କୁ, ରେ, ପାଇଁ, ରୁ, ର, ରେ ବିଭକ୍ତି ଚିହ୍ନ ଲାଗିଛି । ଏଗୁଡ଼ିକ ଯଥାକ୍ରମେ ୨ୟା, ୩ୟା, ୪ର୍ଥୀ, ୫ମୀ, ୬ଷ୍ଠୀ ଓ ୭ମୀ ବିଭକ୍ତିର ଚିହ୍ନ । କିନ୍ତୁ ସମାସରେ ଏହି ବିଭକ୍ତିଗୁଡ଼ିକର ଲୋପ ଘଟିଛି ।

**ଯେଉଁ ସମାସରେ ପୂର୍ବପଦର ଶେଷରେ ଥିବା ବିଭକ୍ତିର ଲୋପହୁଏ, ତାହାକୁ ତତ୍ପୁରୁଷ ସମାସ କୁହାଯାଏ ।**

ପୂର୍ବପଦରେ ୬ ପ୍ରକାର ବିଭକ୍ତି ଲୋପ ହେଉଥିବାରୁ ତତ୍ପୁରୁଷ ସମାସ ୨ୟା ତତ୍ପୁରୁଷ, ୩ୟା ତତ୍ପୁରୁଷ, ୪ର୍ଥୀ ତତ୍ପୁରୁଷ, ୫ମୀ ତତ୍ପୁରୁଷ, ୬ଷ୍ଠୀ ତତ୍ପୁରୁଷ, ୭ମୀ ତତ୍ପୁରୁଷ ନାମରେ ୬ ଭାଗରେ ବିଭକ୍ତ । ପୂର୍ବପଦରେ ଥିବା ୨ୟା ବିଭକ୍ତିର ଲୋପହୋଇ ଯେଉଁ ତତ୍ପୁରୁଷ ସମାସ ଗଠିତ ହୁଏ, ତାହାର ନାମ ୨ୟା ତତ୍ପୁରୁଷ (ଉଦାହରଣ- ଗୃହକୁ ଆଗତ= ଗୃହାଗତ) ଏହିପରି ୩ୟା, ୪ର୍ଥୀ, ୫ମୀ, ୬ଷ୍ଠୀ ଓ ୭ମୀ ତତ୍ପୁରୁଷ ।

ବର୍ତ୍ତମାନ ତଳ ଉଦାହରଣଗୁଡ଼ିକୁ ଲକ୍ଷ୍ୟକର ।

(କ) ଗୋପାଳକୃଷ୍ଣ ଅବାଧ୍ୟ ହେଲେ ମଧ୍ୟ ବେଳେବେଳେ ବାପାଙ୍କ ନିକଟରେ ବସି ଶାସ୍ତ୍ର ଆଲୋଚନା ଶୁଣନ୍ତି । ଅଲକ୍ଷ୍ୟରେ ଗୋପାଳକୃଷ୍ଣଙ୍କ ମନରେ ଏହାର ପ୍ରଭାବ ପଡୁଥାଏ ।

(ଖ) କେତୋଟି ଘଣ୍ଟା ମଧ୍ୟରେ କାଶ୍ମୀରର ରାଜମୁକୁଟ ଅଧିକୃତ ହେବ । ଅକଳନ୍ତି ଧନଦୌଲତ, ଅସରନ୍ତି ଖାଦ୍ୟଭଣ୍ଡାର ହାତରେ ପଡ଼ିବ ।

(ଗ) ସେ ଅନତିଦୂରରେ ଗୋଟିଏ ଆଶ୍ଚର୍ଯ୍ୟ ଘଟଣା ଦେଖିଲେ ।

ଉପର ରେଖାଙ୍କିତ ପଦଗୁଡ଼ିକର ବ୍ୟାସବାକ୍ୟ ହେଉଛି-

| ବ୍ୟାସବାକ୍ୟ | ସମାସନିଷ୍ପନ୍ନ ପଦ | ବ୍ୟାସବାକ୍ୟ | ସମାସନିଷ୍ପନ୍ନ ପଦ |
|---|---|---|---|
| ନ ବାଧ୍ୟ | ଅବାଧ୍ୟ | ନ ଲକ୍ଷ୍ୟ | ଅଲକ୍ଷ୍ୟ |
| ନ କଳନ୍ତି | ଅକଳନ୍ତି | ନ ସରନ୍ତି | ଅସରନ୍ତି |
| ନ ଅତିଦୂର | ଅନତିଦୂର | | |

ଏଠାରେ 'ନ' ପୂର୍ବରେ ଥାଇ ଏହି ପଦଗୁଡ଼ିକ ଗଠିତ ହୋଇଛି ।

**'ନ' ପୂର୍ବରେ ଥାଇ ଯେଉଁ ତତ୍‌ପୁରୁଷ ସମାସ ଗଠିତ ହୁଏ, ତାହାକୁ ନଞ୍ ତତ୍‌ପୁରୁଷ ସମାସ କୁହାଯାଏ ।**

ତତ୍‌ପୁରୁଷର ଆଉ ଗୋଟିଏ ପ୍ରକାର ମଧ୍ୟ ଅଛି । ତଳ ବାକ୍ୟଗୁଡ଼ିକୁ ଲକ୍ଷ୍ୟକର ।

(କ) ଦୂରରୁ ଏହି ଅଗ୍ନିଶିଖା ଦେଖି ରାଜ୍ୟବାସୀ ବିଜୟସମ୍ବାଦ ଜାଣିପାରୁଥିଲେ ।

(ଖ) ସେହି ବିଶାରଦ ରାଜପରିଷଦଗଣଙ୍କ ମଧ୍ୟରେ କେତେକ କପଟାଚାରୀ ଥାଆନ୍ତି ।

(ଗ) ଅଶ୍ୱାରୋହୀ ବାର୍ତ୍ତାବହମାନେ ଯେତେ ବେଗରେ ଗଲେ ସୁଦ୍ଧା ଦିନକ ମଧ୍ୟରେ ପହଞ୍ଚିପାରୁନଥିଲେ ।

ରେଖାଙ୍କିତ ପଦଗୁଡ଼ିକର ବ୍ୟାସବାକ୍ୟ ହେଲା-

| ବ୍ୟାସବାକ୍ୟ | ସମାସନିଷ୍ପନ୍ନ ପଦ |
|---|---|
| ରାଜ୍ୟରେ ବାସ କରନ୍ତି ଯେ | ରାଜ୍ୟବାସୀ |
| କପଟ ଆଚରଣ କରେ ଯେ | କପଟାଚାରୀ |

| | |
|---|---|
| ଅଶ୍ୱ ଆରୋହଣ କରେ ଯେ | ଅଶ୍ୱାରୋହୀ |
| ବାର୍ତ୍ତା ବହନ କରେ ଯେ | ବାର୍ତ୍ତାବହ |

ଏଠାରେ ବାସକରେ, ଆଚରଣ କରେ, ଆରୋହଣ କରେ ଓ ବହନ କରେ ଏଗୁଡ଼ିକ କ୍ରିୟାପଦ । ଏହି କ୍ରିୟାପଦଗୁଡ଼ିକର ପୂର୍ବରେ ଗୋଟିଏ ଗୋଟିଏ ପଦ ଅଛି ଯଥା- ରାଜ୍ୟ, କପଟ, ଅଶ୍ୱ ଓ ବାର୍ତ୍ତା । **କ୍ରିୟାର ପୂର୍ବପଦଗୁଡ଼ିକୁ ଉପପଦ କୁହାଯାଏ ।**

**ଉପପଦ ଓ କ୍ରିୟାର ମିଳନରେ ଯେଉଁ ସମାସ ହୁଏ ତାହାକୁ ଉପପଦ ତତ୍ପୁରୁଷ ସମାସ କୁହାଯାଏ ।**

ସେହିଭଳି କୁମ୍ଭକାର, କାନକୁହା, ଆଗଚଲା, ଆକ୍ରମଣକାରୀ ପ୍ରଭୃତି ଏହି ଶ୍ରେଣୀୟ ସମାସନିଷ୍ପନ୍ନ ଶବ୍ଦ ।

## ୪- ବହୁବ୍ରୀହି ସମାସ

(କ) ଫୁଲବାଣୀ ଜିଲ୍ଲାର ବଉଦରେ ଚନ୍ଦ୍ରଚୂଡ଼ ମନ୍ଦିର ପ୍ରସିଦ୍ଧ ।

(ଖ) ମାତ୍ର ଦୃଢ଼ମନା ବ୍ୟକ୍ତିମାନେ ଏଥିରେ ବିଚଳିତ ହୁଅନ୍ତି ନାହିଁ ।

ଉପରଲିଖିତ ରେଖାଙ୍କିତ ପଦଗୁଡ଼ିକର ବ୍ୟାସବାକ୍ୟ ହେଉଛି-

ଚନ୍ଦ୍ର ଚୂଡ଼ାରେ ଯାହାର (ଚନ୍ଦ୍ରଚୂଡ଼), ଦୃଢ଼ ମନ ଯାହାର (ଦୃଢ଼ମନା) । ଲକ୍ଷ୍ୟ କଲେ ଜାଣିପାରିବ 'ଚନ୍ଦ୍ର' ଗୋଟିଏ ପଦ ଓ 'ଚୂଡ଼ା' ଆଉ ଗୋଟିଏ ପଦ । କିନ୍ତୁ 'ଚନ୍ଦ୍ରଚୂଡ଼' କହିଲେ ଏଠାରେ ଚନ୍ଦ୍ର କିମ୍ୱା ଚୂଡ଼ା କାହାକୁ ନ ବୁଝାଇ 'ଚନ୍ଦ୍ର ଚୂଡ଼ାରେ ଯାହାର' ତାଙ୍କୁ (ଶିବଙ୍କୁ) ବୁଝାଉଛି । ସେହିପରି 'ଦୃଢ଼' ଓ 'ମନ' ଅଲଗା ଅଲଗା ପଦ । ମାତ୍ର ଏଠାରେ 'ଦୃଢ଼ମନା' କହିଲେ କୌଣସି ଏକ ବ୍ୟକ୍ତି ବିଷୟରେ କୁହାହୋଇଥିବାର ଜଣାଯାଏ ।

**ଯେଉଁ ସମାସରେ ଦୁଇଟି ପଦର ମିଳନ ହୋଇ କୌଣସି ଅନ୍ୟ ଅର୍ଥକୁ ବୁଝାଏ, ତାହାକୁ ବହୁବ୍ରୀହି ସମାସ କୁହାଯାଏ ।**

ସେହି ମହାନ୍ ଶିଳ୍ପୀ ଏଞ୍ଜେଲୋ ଯେପରି ନିର୍ଭୀକ ସେହିପରି ଶାନ୍ତିପ୍ରିୟ ଥିଲେ ।

ଆଜୀବନ ନୀରୋଗ ଓ ନିରଳସ ରହି ସେ ନିଜର ସକଳ କାର୍ଯ୍ୟ ସୁଚାରୁ ରୂପେ ସଂପାଦନ କରୁଥିଲେ । ରେଖାଙ୍କିତ ପଦଗୁଡ଼ିକର ବ୍ୟାସବାକ୍ୟ ହେଉଛି-

ନାହିଁ ଭୟ ଯାହାର (ନିର୍ଭୀକ), ନାହିଁ ରୋଗ ଯାହାର (ନୀରୋଗ), ନାହିଁ ଅଳସ ଯାହାର (ନିରଳସ) ।

**ବହୁବ୍ରୀହି ନାହିଁ ଅର୍ଥ ପ୍ରକାଶ କଲେ ତାହାକୁ ନିଷେଧାର୍ଥକ ବହୁବ୍ରୀହି କୁହାଯାଏ ।**

ବିଗତ ହୋଇଛି ଅର୍ଥାତ୍ ମରିଯାଇଛି ଧବ ଯାହାର (ବିଧବା), ନାହିଁ ତାର ଯହିଁରେ (ବେତାର), ନାହିଁ ହିସାବ ଯାହାର (ବେହିସାବୀ) ପ୍ରଭୃତି ଏହି ସମାସର ଅନ୍ତର୍ଗତ ।

ତଳେ ଦିଆଯାଇଥିବା ବାକ୍ୟଗୁଡ଼ିକୁ ପଢ଼ ।

(କ) ଗୋପାଳକୃଷ୍ଣ ସପରିବାର ଯାଇ ଗଞ୍ଜାମ ସହରରେ ବାସ କଲେ ।

(ଖ) ଉପରବେଳା ବ୍ୟାୟାମ କରି ଦେହକୁ ସବଳ ଓ ମନକୁ ସତେଜ ରଖିଲେ ।

(ଗ) ମୁଁ ଏଠାରେ ସକୁଟୁମ୍ବ କୁଶଳରେ ଅଛି ।

(ଘ) ମୁଁ ଆପଣଙ୍କର ସବିନୟ ଅନୁରୋଧ ନିଶ୍ଚୟ ରକ୍ଷା କରିବି ।

ଏଠାରେ ରେଖାଙ୍କିତ ପଦଗୁଡ଼ିକୁ ଲକ୍ଷ୍ୟକର । ଏଗୁଡ଼ିକର ବ୍ୟାସବାକ୍ୟ ହେଉଛି-

ପରିବାର ସହ ବିଦ୍ୟମାନ (ସପରିବାର), ବଳ ସହ ବିଦ୍ୟମାନ (ସବଳ), ତେଜ ସହ ବିଦ୍ୟମାନ (ସତେଜ), ଠିକ୍ ସେହିପରି ସକୁଟୁମ୍ବ ଓ ସବିନୟ । ଲକ୍ଷ୍ୟ କଲେ ଜାଣିପାରିବ ଏଠାରେ 'ସହ' ଶବ୍ଦ 'ସ' ଆକାର ଧାରଣ କରିଛି । ଏହି ପ୍ରକାରେ-

**ପୂର୍ବରେ 'ସ' ଥାଇ ଯେଉଁ ପଦ ଗଠିତ ହୁଏ, ତାହାକୁ ସହାର୍ଥକ ବହୁବ୍ରୀହି ସମାସ କୁହାଯାଏ ।**

### ୫- ଅବ୍ୟୟୀଭାବ

ନିମ୍ନଲିଖିତ ଗଦ୍ୟାଂଶ ଓ ପଦ୍ୟାଂଶଗୁଡ଼ିକରେ ରେଖାଙ୍କିତ ପଦଗୁଡ଼ିକୁ ଲକ୍ଷ୍ୟକର ।

(କ) ଅଶୋକ କହିଥିଲେ, "କରିବି ନାହିଁ ମୁଁ ଯୁଦ୍ଧ ଆମରଣ ।"

(ଖ) ମୋର ପ୍ରତିମୂର୍ତ୍ତି ନୁହେଁ, ମୋ ଓଡ଼ିଶାର ପ୍ରତିମୂର୍ତ୍ତି ଗଢ଼ ।

(ଗ) ଖେଳ କଉତୁକେ ସେ ପାଦପ୍ରହାର ସହି
 କରିନି ରୋଷ ଯେ ଅଭିମାନ ପ୍ରତିବାଦ ।

(ଘ) ୧୮୬୬ ମସିହାରେ ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ପଡ଼ିଥିଲା ।

ରେଖାଙ୍କିତ ପଦଗୁଡ଼ିକର ବ୍ୟାସବାକ୍ୟ ହେଉଛି-

| କେଉଁ ଅର୍ଥରେ | ବ୍ୟାସବାକ୍ୟ | ସମାସନିଷ୍ପନ୍ନ ପଦ |
|---|---|---|
| (କ) ପର୍ଯ୍ୟନ୍ତ ଅର୍ଥରେ | ମରଣ ପର୍ଯ୍ୟନ୍ତ | ଆମରଣ |
| (ଖ) ସାଦୃଶ୍ୟ ଅର୍ଥରେ | ମୂର୍ତ୍ତିର ସଦୃଶ | ପ୍ରତିମୂର୍ତ୍ତି |
| (ଗ) ବିରୋଧ ଅର୍ଥରେ | ବାଦର ବିରୋଧ | ପ୍ରତିବାଦ |
| (ଘ) ଅଭାବ ଅର୍ଥରେ | ଭିକ୍ଷାର ଅଭାବ | ଦୁର୍ଭିକ୍ଷ |

ଉପର ତୃତୀୟ ସ୍ତମ୍ଭରେ ଲେଖାଥିବା ସମାସନିଷ୍ପନ୍ନ ପଦଗୁଡ଼ିକର ପୂର୍ବପଦଗୁଡ଼ିକ (ଯଥା: ଆ, ପ୍ରତି, ଦୁଃ) ଗୋଟିଏ ଗୋଟିଏ ଅବ୍ୟୟ ।

**ଅବ୍ୟୟ ପୂର୍ବପଦ ରୂପେ ଥାଇ ଯେଉଁ ସମାସ ନିଷ୍ପନ୍ନ ହୁଏ, ତାହାକୁ ଅବ୍ୟୟୀଭାବ ସମାସ କୁହାଯାଏ ।**

## ୬- ଦ୍ୱିଗୁ ସମାସ

ଗାଁରେ ତୁମେ ତ୍ରିନାଥ ମେଳା ଦେଖିଥିବ । ଗାଁର ବୈଦ୍ୟମାନେ ତ୍ରିଫଳା ପାଣି ପିଇବାକୁ କହନ୍ତି । ଯେ କୌଣସି ଶ୍ରାଦ୍ଧ, ହୋମ ଓ ବ୍ରତ ଇତ୍ୟାଦି ଶୁଭକାର୍ଯ୍ୟରେ ପଞ୍ଚାମୃତ ଆମର ପ୍ରିୟ ପୂଜାଦ୍ରବ୍ୟ । ସାତଦିନକୁ ଆମେ କହୁ ସପ୍ତାହ । ଶହେବର୍ଷକୁ ଏକ ଶତାବ୍ଦୀ ବୋଲି କୁହାଯାଏ ।

ଉପର ଲିଖିତ ରେଖାଙ୍କିତ ପଦଗୁଡ଼ିକର ଆରମ୍ଭରେ ସଂଖ୍ୟା ରହିଛି । ଯଥା: ତ୍ରି, ପଞ୍ଚ, ସପ୍ତ ଓ ଶତ । ଏହି ରେଖାଙ୍କିତ ପଦଗୁଡ଼ିକର ବ୍ୟାସବାକ୍ୟ ହେଉଛି-

| ବ୍ୟାସବାକ୍ୟ | ସମାସନିଷ୍ପନ୍ନ ପଦ |
|---|---|
| ତ୍ରି ନାଥଙ୍କର ସମାହାର | ତ୍ରିନାଥ |
| ତ୍ରି ଫଳର ସମାହାର | ତ୍ରିଫଳା |
| ପଞ୍ଚ ଅମୃତର ସମାହାର | ପଞ୍ଚାମୃତ |
| ସପ୍ତ ଅହର ସମାହାର | ସପ୍ତାହ |
| ଶତ ଅବ୍ଦର ସମାହାର | ଶତାବ୍ଦୀ |

**ଯେଉଁ ସମାସରେ ସଂଖ୍ୟାବାଚକ ଶବ୍ଦ ପ୍ରଥମେ ଥାଏ ଏବଂ ସମାସନିଷ୍ପନ୍ନ ପଦ ସମାହାର ସମଷ୍ଟିକୁ ବୁଝାଏ, ତାହାକୁ ଦ୍ୱିଗୁ ସମାସ କୁହାଯାଏ ।**

ସେହିପରି ସପ୍ତର୍ଷି (ସପ୍ତ ଋଷିଙ୍କର ସମଷ୍ଟି), ତ୍ରିବେଣୀ (ତ୍ରି ବେଣୀର ଅର୍ଥାତ୍, ଗଙ୍ଗା, ଯମୁନା ଓ ସରସ୍ୱତୀର ସମଷ୍ଟି), ପଞ୍ଚବଟୀ (ପଞ୍ଚ ବଟର ସମଷ୍ଟି) ଇତ୍ୟାଦି । (ସମାହାର ଓ ସମଷ୍ଟି ଏକା ଅର୍ଥ)

# ଅନୁଶୀଳନୀ

୧. ଏକପଦରେ ପ୍ରକାଶ କର

ପର୍ବତ ଆରୋହଣ କରେ ଯେ, ଅନ୍ୟ ମନ ଯାହାର, ଘୋଡ଼ାଟଣା ଗାଡ଼ି, ଧୂଳିରେ ଧୂସର, ନାହିଁ ତାର ଯହିଁରେ, କଲ୍ୟାଣ କରେ ଯେ, ନ ସାଧାରଣ, କ୍ଷଣକୁ କ୍ଷଣ, ସାବଧାନ ସହ ବିଦ୍ୟମାନ, ଏକରୁ ଅଧିକ, ନୁହେଁ ଦରକାରୀ, ଶିକ୍ଷା ନିମନ୍ତେ ଅନୁଷ୍ଠାନ, ଦଶ ଆନନ ଯାହାର ।

୨. ବନଜ = ବନରୁ ଜାତ ଯେ । ସେହିପରି ନିମ୍ନଲିଖିତ ଶବ୍ଦଗୁଡ଼ିକର ବ୍ୟାସବାକ୍ୟ ଲେଖ ।

ଅଗ୍ରଜ, ଜଳଜ, ପଙ୍କଜ, ଖଣିଜ, ଭୂମିଜ, କୃଷିଜ, ଅଣ୍ଡଜ, ସ୍ୱେଦଜ,

୩. ଦାଣ୍ଡର ମଝି = ମଝିଦାଣ୍ଡ । ଠିକ୍ ଏହି ପ୍ରକାର ଆଉ ୫ଟି ଶବ୍ଦ ଲେଖ ।

୪. କୋଦଣ୍ଡକୁ ଧରନ୍ତି ଯେ ସେ 'କୋଦଣ୍ଡଧର'– ସେହିପରି

| | |
|---|---|
| ହଳକୁ ଧରନ୍ତି ଯେ | ଜଳକୁ ଧରନ୍ତି ଯେ |
| ମହୀକୁ ଧରନ୍ତି ଯେ | ଭୂକୁ ଧରନ୍ତି ଯେ |
| ବାରିକୁ ଧରନ୍ତି ଯେ | ବିଷକୁ ଧରନ୍ତି ଯେ |
| ବେଣୁକୁ ଧରନ୍ତି ଯେ | ମୂରଲିକୁ ଧରନ୍ତି ଯେ |
| ଶ୍ରୀକୁ ଧରନ୍ତି ଯେ | ଶଶକୁ ଧରିଛନ୍ତି ଯେ |

୫. ନିମ୍ନଲିଖିତ ପଦ୍ୟାଂଶଗୁଡ଼ିକରେ ରେଖାଙ୍କିତ ପଦଗୁଡ଼ିକର ବ୍ୟାସବାକ୍ୟ ସହ ସମାସ ନାମ ଲେଖ ।

ପରିଶୁଷ୍କ ଏବେ ସରୋବରଜଳ ନଦୀଦେହ କୃଶ ଅତି
ଭେକମୀନ ଆଦି ଜଳଚର ପ୍ରାଣୀ ମରନ୍ତି ଲଭି ଦୁର୍ଗତି ।
ଆତପସନ୍ତାପେ ସନ୍ତାପିତ ସର୍ବେ ପଶୁପକ୍ଷୀ ଜୀବକୁଳ

ଶୁଷ୍କ କଣ୍ଠ ତାଲୁ ବିକଳ ଅଥୟ ସରବେ ତୃଷାଆକୁଳ
ରୂପଗୁଣେ ସରିସମ ମୋ କିଏ ଦେଖୁଛ କାହିଁ
ବଣିକବେଢାରେ ମୋ ଲାଗି ଧନଦୀପାଳୀ ଜଳେ
ତୋଟା ନଇପଠା ସକାଳସଞ୍ଜେ ବସି
ମେଳାମଉଛବେ ଯହିଁ ମୁଁ ରହିଲି ମାତି
ତ୍ରିକୋଣ କାଚେ ଆଲୋକ ସମ
ଆକାଶେ ଦିଶେ କି ଅନୁପମ
ଅନୁଜରେ ଦେଇ ମନ ଯେ ବେଳୁଁ ବେଳ ଅସ୍ଥିର
ଆକୁଳଚିତ୍ତ ସେ, ସକଳ ଦିଶେ ଚାହାଁନ୍ତି ବୀର

୬. ଆଶା ଓ ଭରସା ଆଶାଭରସା (ଦ୍ୱନ୍ଦ୍ୱ) । ଠିକ୍ ଏହିପରି ଆଉ ୫ଟି ସମାସନିଷ୍ପନ୍ନ ପଦ ବ୍ୟାସବାକ୍ୟ ସହ ଲେଖ ।



# ଯୁଗ୍ମଶବ୍ଦ

କଥାରେ ଅଛି "ଯୋଡ଼ାକୁ ଘୋଡ଼ା ସରି ନୁହେଁ"- ଅର୍ଥାତ୍ ଦୁଇ ଜଣ ହେଲେ ଘୋଡ଼ା ଭଳି ପ୍ରାଣୀକୁ ମଧ୍ୟ ଅସୁବିଧାରେ ପକାଇଦେବେ । ଏଣୁ ଏକ ଅପେକ୍ଷା ଦୁଇ କେତେକ ସ୍ଥାନରେ ଆବଶ୍ୟକ । ପୁଣି କଥାରେ ଅଛି- "ଏକ ଆଖି ଆଖି ନୁହେଁ, ଏକ ସାକ୍ଷୀ ସାକ୍ଷୀ ନୁହେଁ ।" ଅର୍ଥାତ୍ ଯେଉଁ ଲୋକର ମାତ୍ର ଗୋଟିଏ ଆଖି, ତାହା ଅପେକ୍ଷା ଯେଉଁ ଲୋକର ଦୁଇଟି ଆଖି ସେ ସୁନ୍ଦର । ସେହିପରି କୌଣସି ନ୍ୟାୟ ବିଚାର ସମୟରେ ଜଣେ ସାକ୍ଷୀ ଅପେକ୍ଷା ଦୁଇଜଣ ସାକ୍ଷୀ ଦରକାର ପଡ଼ନ୍ତି । ତୁମେ କେବେ ସାହିପଡ଼ିଶାରେ ବାହାଘର ଦେଖିଥିବ । ବେଦୀରେ ପୁରୋହିତ, ବର, ବରପିତା ବା କନ୍ୟାପିତା ବସିଲାବେଳେ ଗୋଟିଏ ଧୋତି ପିନ୍ଧିଥାଆନ୍ତି ଓ ବେକରେ ଖଣ୍ଡେ ଛୋଟ ଲୁଗା ପକାଇଥାଆନ୍ତି । ଲୁଗା ସହିତ ଏହି ଛୋଟଲୁଗା ବା ଦୋସଡ଼ା ଖଣ୍ଡିକ ଆଗରୁ ଯୋଡ଼ା ହୋଇଥାଏ । ଏହାକୁ 'ଯୋଡ଼' କୁହାଯାଏ । କୌଣସି ଶୁଭ କାମରେ ବେକରେ ବା ଦେହରେ ଦୋସଡ଼ା ଖଣ୍ଡେ ନ ପକାଇଲେ ଲୋକେ କହନ୍ତି- 'ଏକକାନିକିଆ' । ଏଣୁ ଯୋଡ଼ି ନିହାତି ଦରକାର ।

ତଳଲିଖିତ ବାକ୍ୟଗୁଡ଼ିକୁ ଭଲଭାବେ ପଢ଼ ।

(କ) କବି ମନୁଷ୍ୟ ଜୀବନ ଓ ମନୁଷ୍ୟ ସମାଜର ଭଲମନ୍ଦ, ନ୍ୟାୟଅନ୍ୟାୟକୁ ଦେଖିପାରେ ।

(ଖ) ପୁଣି କେତେବେଳେ କ୍ରୀଡ଼ାକୌତୁକରେ ମାଟି ଧୂଳିଧୂସର ଦେହରେ ଘରକୁ ଫେରୁଥିଲେ ।

(ଗ) ଛାନ୍ଦ ଓ ଚଉପଦୀ ସଂଗୀତର ମାଧୁର୍ଯ୍ୟରେ ପଶୁପକ୍ଷୀ ମଧ୍ୟ ଆକୃଷ୍ଟ ହୁଅନ୍ତି ।

(ଘ) ସେ ପୁଅକୁ ଆନନ୍ଦରେ ଖୁଆଇପିଆଇ ଚାଟଶାଳୀକୁ ପଠାଇଦେଲେ ।

(ଙ) ଆଗ ରାଜାରାଜୁଡ଼ାଙ୍କ ଅମଳରେ ସ୍ୱେଚ୍ଛାଚାରମୂଳକ ଶାସନ ଚାଲୁଥିଲା ।

ଶୁଷ୍କ କଣ୍ଠ ତାଲୁ ବିକଳ ଅଥୟ ସରବେ ତୃଷାଆକୁଳ
ରୂପଗୁଣେ ସରିସମ ମୋ କିଏ ଦେଖୁଛ କାହିଁ
ବଣିଜବେଭାରେ ମୋ ଲାଗି ଧନଦୀପାଳୀ ଜଳେ
ତୋଟା ନଇପଠା ସକାଳସଞ୍ଜେ ବସି
ମେଳାମଉଛବେ ଯହିଁ ମୁଁ ରହିଲି ମାତି
ତ୍ରିକୋଣ କାଚେ ଆଲୋକ ସମ
ଆକାଶେ ଦିଶେ କି ଅନୁପମ
ଅନୁଜରେ ଦେଇ ମନ ଯେ ବେଳୁଁ ବେଳ ଅସ୍ଥିର
ଆକୁଳଚିତ୍ତ ସେ, ସକଳ ଦିଶେ ଚାହାଁନ୍ତି ବୀର

୬. ଆଶା ଓ ଭରସା ଆଶାଭରସା (ଦ୍ୱନ୍ଦ୍ୱ) । ଠିକ୍ ଏହିପରି ଆଉ ୫ଟି ସମାସନିଷ୍ପନ୍ନ ପଦ ବ୍ୟାସବାକ୍ୟ ସହ ଲେଖ ।



# ଯୁଗ୍ମଶବ୍ଦ

କଥାରେ ଅଛି "ଯୋଡ଼ାକୁ ଘୋଡ଼ା ସରି ନୁହେଁ"- ଅର୍ଥାତ୍ ଦୁଇ ଜଣ ହେଲେ ଘୋଡ଼ା ଭଳି ପ୍ରାଣୀକୁ ମଧ୍ୟ ଅସୁବିଧାରେ ପକାଇଦେବେ । ଏଣୁ ଏକ ଅପେକ୍ଷା ଦୁଇ କେତେକ ସ୍ଥାନରେ ଆବଶ୍ୟକ । ପୁଣି କଥାରେ ଅଛି- "ଏକ ଆଖି ଆଖି ନୁହେଁ, ଏକ ସାକ୍ଷୀ ସାକ୍ଷୀ ନୁହେଁ ।" ଅର୍ଥାତ୍ ଯେଉଁ ଲୋକର ମାତ୍ର ଗୋଟିଏ ଆଖି, ତାହା ଅପେକ୍ଷା ଯେଉଁ ଲୋକର ଦୁଇଟି ଆଖି ସେ ସୁନ୍ଦର । ସେହିପରି କୌଣସି ନ୍ୟାୟ ବିଚାର ସମୟରେ ଜଣେ ସାକ୍ଷୀ ଅପେକ୍ଷା ଦୁଇଜଣ ସାକ୍ଷୀ ଦରକାର ପଡ଼ନ୍ତି । ତୁମେ କେବେ ସାହିପଡ଼ିଶାରେ ବାହାଘର ଦେଖିଥିବ । ବେଦୀରେ ପୁରୋହିତ, ବର, ବରପିତା ବା କନ୍ୟାପିତା ବସିଲାବେଳେ ଗୋଟିଏ ଧୋତି ପିନ୍ଧିଥାଆନ୍ତି ଓ ବେକରେ ଖଣ୍ଡେ ଛୋଟ ଲୁଗା ପକାଇଥାଆନ୍ତି । ଲୁଗା ସହିତ ଏହି ଛୋଟଲୁଗା ବା ଦୋସଡ଼ା ଖଣ୍ଡିକ ଆଗରୁ ଯୋଡ଼ା ହୋଇଥାଏ । ଏହାକୁ 'ଯୋଡ଼' କୁହାଯାଏ । କୌଣସି ଶୁଭ କାମରେ ବେକରେ ବା ଦେହରେ ଦୋସଡ଼ା ଖଣ୍ଡେ ନ ପକାଇଲେ ଲୋକେ କହନ୍ତି- 'ଏକକାନିକିଆ' । ଏଣୁ ଯୋଡ଼ି ନିହାତି ଦରକାର ।

ତଳଲିଖିତ ବାକ୍ୟଗୁଡ଼ିକୁ ଭଲଭାବେ ପଢ଼ ।

(କ) କବି ମନୁଷ୍ୟ ଜୀବନ ଓ ମନୁଷ୍ୟ ସମାଜର ଭଲମନ୍ଦ, ନ୍ୟାୟଅନ୍ୟାୟକୁ ଦେଖିପାରେ ।

(ଖ) ପୁଣି କେତେବେଳେ କ୍ରୀଡ଼ାକୌତୁକରେ ମାତି ଧୂଳିଧୂସର ଦେହରେ ଘରକୁ ଫେରୁଥିଲେ ।

(ଗ) ଛାନ୍ଦ ଓ ଚଉପଦୀ ସଂଗୀତର ମାଧୁର୍ଯ୍ୟରେ ପଶୁପକ୍ଷୀ ମଧ୍ୟ ଆକୃଷ୍ଟ ହୁଅନ୍ତି ।

(ଘ) ସେ ପୁଅକୁ ଆନନ୍ଦରେ ଖୁଆଇପିଆଇ ଚାଟଶାଳୀକୁ ପଠାଇଦେଲେ ।

(ଙ) ଆଗ ରାଜାରାଜୁଡ଼ାଙ୍କ ଅମଳରେ ସ୍ୱେଚ୍ଛାଚାରମୂଳକ ଶାସନ ଚାଲୁଥିଲା ।

(ଚ) ରାତି ନପାହୁଣୁ ଝାଡ଼ାବାନ୍ତି ବା ଅନ୍ୟ ବେମାରି ଉପସ୍ଥିତ ହେଲା ।

(ଛ) କେତେକ ଧାନ ଅଧାଅଧି ବାହାରି ଏ ପାଖ ସେପାଖ ଦୋହଲୁଥାଏ ।

(ଜ) ଆମେ ସମସ୍ତେ ଏକାଠି ବୁଢ଼ାବୁଢ଼ା ହୋଇ ଲଗାଲଗି ଛନ୍ଦାଛନ୍ଦି ହୋଇ ରହୁଁ ।

(ଝ) ରୂପଗୁଣେ ସରିସମ ମୋ କିଏ ଦେଖିଛୁ କାହିଁ ।

(ଞ) ନାହିଁ ମୋର ଜାତିଅଜାତି ମୁହିଁ ସବୁରି ଜାଣ ।

(ଟ) ମୋହପରି ଲୁହରକତ ଶୋଷି ସରଳ ମନେ ।
ଫୁଲଫଳେ କେବେ ତୋଷିଛୁ କହ କାହାକୁ ଜଣେ ।

(ଠ) ଗୃହକୃତ୍ୟ ପକାଇ ବସିଥିବି ଏକାଇ
ନିଶିଦିନ ତୋତେ କାଖେଇକି ରେ ।

(ଡ) କୋଟି ଜନତାର ଆଶାଭରସାର ଯେତେହୁଏ ନାରଖାର ।

ଉପରଲିଖିତ ଗଦ୍ୟାଂଶ ଓ ପଦ୍ୟାଂଶଗୁଡ଼ିକରେ ରେଖାଙ୍କିତ ପଦଗୁଡ଼ିକୁ ଲକ୍ଷ୍ୟକର । ଏଗୁଡ଼ିକ ଯୋଡ଼ିଯୋଡ଼ି ହୋଇ ବସିଛନ୍ତି । ଯଥା- ଭଲମନ୍ଦ, ନ୍ୟାୟଅନ୍ୟାୟ, କ୍ରୀଡ଼ାକୌତୁକ, ପଶୁପକ୍ଷୀ, ଖୁଆଇପିଆଇ, ରାଜାରାଜୁଡ଼ା, ଝାଡ଼ାବାନ୍ତି, ଅଧାଅଧି, ଲଗାଲଗି, ଛନ୍ଦାଛନ୍ଦି, ରୂପଗୁଣ, ଜାତିଅଜାତି, ଲୁହରକତ, ଫୁଲଫଳ, ନିଶିଦିନ, ଆଶାଭରସା । ଏମାନଙ୍କ ସଂଖ୍ୟା ଦୁଇଦୁଇ । ଏମାନଙ୍କୁ **ଯୁଗ୍ମଶବ୍ଦ** କୁହାଯାଏ । ଯାହା ପାଖରେ ଯେ ବସିବା କଥା, ସେ ତା ପାଖରେ ବସେ । ତୁମେ ସାଙ୍ଗସାଥୀ ପାଖରେ ବସିଲେ ଆନନ୍ଦ ପାଅ, ଖୁସିଗପ କର । ଯଦି କୌଣସି ବୟସ୍କ ଲୋକ ବା ଅପରିଚିତ ଲୋକ ପାଖେ ବସ, ତୁମେ ସେତେ ମୁକ୍ତ ଓ ଭଲଭାବରେ କଥାଭାଷା କରିପାରିବ କି ? ଠିକ୍ ଆମ ସାହିତ୍ୟରେ ସେହିପରି କେତେଗୁଡ଼ିଏ ଏକାଜାତିର ଶବ୍ଦ ଅଛନ୍ତି । ସେମାନେ ବସିଲାବେଳେ ତାଙ୍କ ସାଙ୍ଗସାଥୀ ସହ ଏକାଠି ବସନ୍ତି । ପୁଣି କିଏ ଆଗ କିଏ ପଛ, ତାହାର ମଧ୍ୟ ଏକ ନିୟମ ଅଛି । ଭଲମନ୍ଦ, ଖୁଆଇପିଆଇ, ରାଜାରାଜୁଡ଼ା, ଅଧାଅଧି ଏସବୁ ଶୁଣିବାକୁ କେଡ଼େ ବଢ଼ିଆ ଲାଗେ । ମାତ୍ର ତୁମେ ଯଦି କହିବ ମନ୍ଦଭଲ, ପିଆଇଖୁଆଇ, ରାଜୁଡ଼ାରାଜା, ଅଧିଅଧା ତେବେ କାନକୁ ଏସବୁ ଶୁଣିବାକୁ ଭଲ ଲାଗିବ ନାହିଁ । ତୁମ ପଢ଼ା ବହିରେ ଏହିଭଳି ବହୁତ ଯୁଗ୍ମଶବ୍ଦ ଅଛି । ଏଗୁଡ଼ିକ ଆମ ସାହିତ୍ୟର ସମ୍ପତ୍ତି । ଆମେ କଥା କହିଲାବେଳେ, କୌଣସି ବିଷୟ ଲେଖିଲାବେଳେ ଏମାନେ

ଆପେଆପେ ଆସି ଆମ ଲେଖାରେ ରହିଯାଆନ୍ତି ଓ ଆମ ଲେଖାର ସୌନ୍ଦର୍ଯ୍ୟ ବୃଦ୍ଧିକରନ୍ତି ।

ଉପର ଉଦାହରଣଗୁଡ଼ିକରୁ ବର୍ତ୍ତମାନ ୪ ଗୋଟି ଯୁଗ୍ମଶବ୍ଦ ନେଇ ପରୀକ୍ଷା କର ।

( ୧ ) ନ୍ୟାୟଅନ୍ୟାୟ ( ୨ ) କ୍ରୀଡ଼ାକୌତୁକ (୩) ଗପସପ ( ୪ ) ଛନ୍ଦାଛନ୍ଦି ।

( ୧ ) ନ୍ୟାୟଅନ୍ୟାୟ: ନ୍ୟାୟ ସଙ୍ଗେ ଅନ୍ୟାୟର ପଡ଼େନାହିଁ । ଏ ଦୁହେଁ ବିପରୀତ । ତଥାପି ବିପରୀତ ଅର୍ଥ ପ୍ରକାଶ କଲେ ମଧ୍ୟ ଏକାଠି ବସିଛନ୍ତି । ସେହିଭଳି ଭଲମନ୍ଦ, ଆୟବ୍ୟୟ, ଜମାଖର୍ଚ୍ଚ, ଖାଲଢିପ, ଦେବାନେବା, ଉଠବସ, ଧୋଇମରୁଡ଼ି, ଜୀବନମରଣ, ସୁଖଦୁଃଖ, ପାପପୁଣ୍ୟ, ଦେଣନେଣ, କିଣାବିକା, ଜାତିଅଜାତି, ଭାଇଭଗାରି ଏହି ଶ୍ରେଣୀର ଅନ୍ତର୍ଗତ ।

ଅତଏବ **ଦୁଇ ବିପରୀତାର୍ଥକ ଶବ୍ଦ ଯୋଗେ ମଧ୍ୟ ଯୁଗ୍ମଶବ୍ଦ ଗଠିତ ହୋଇପାରେ ।**

( ୨ ) କ୍ରୀଡ଼ାକୌତୁକ: କ୍ରୀଡ଼ା ସହ କୌତୁକର ସଂପର୍କ ଅଛି । ସେହିପରି ଲୋକେ କହନ୍ତି ଖେଳକସରତ, ମଉଜମଜଲିସ, ଧାଁଧପଡ଼, ଥଟ୍ଟାତାମସା । ଏଠାରେ ଖେଳ ଅର୍ଥ ଯାହା କୌତୁକ ଅର୍ଥ ମଧ୍ୟ ପ୍ରାୟ ତାହା । ସେହିପରି ମଉଜ ସହ ମଜଲିସ୍, ଥଟ୍ଟା ସହ ତାମସାର ସଂପର୍କ । ଏମାନେ ଯୁକ୍ତ ହୋଇ ଏକ ଅର୍ଥ ପ୍ରକାଶ କରନ୍ତି । ଏମାନଙ୍କୁ କୁହାଯାଏ ସମାର୍ଥଜ୍ଞାପକ ଯୁଗ୍ମ ଶବ୍ଦ । ସେହିଭଳି ଭାତତିଅଣ, ରନ୍ଧାବଢ଼ା, କଳିକଜିଆ, ଦରଦାମ, ବନ୍ଧୁବାନ୍ଧବ, ହଣାମରା, ଭିଡ଼ାଓଟରା, ପିଠାପଣା, ଖଟମାଠ, କାଳିକଲମ, ମାରଧର, ଚାପାଣି, ଖିରିପିଠା, ଭୋଜିଭାତ, ଦେଖାଶୁଣା, ଗୋରୁଗାଈ, ମଣିମାଣିକ୍ୟ, ଧନରତ୍ନ, ଜୀବଜନ୍ତୁ ଇତ୍ୟାଦି ଏହି ଶ୍ରେଣୀରେ ନିଆଯାଇପାରେ ।

ଏହିଭଳି **ସମାର୍ଥଜ୍ଞାପକ ଶବ୍ଦଯୋଗେ ମଧ୍ୟ ଯୁଗ୍ମଶବ୍ଦ ତିଆରି ହୁଏ ।**

(୩) ଗପସପ: ଏହି ଯୁଗ୍ମଶବ୍ଦରେ 'ଗପ'ର ନିର୍ଦ୍ଦିଷ୍ଟ ଅର୍ଥ ଅଛି କିନ୍ତୁ 'ସପ'ର ସେପରି ନାହିଁ । ସେହିପରି ଆମେ ଅଧାଅଧି, ବାସନକୁସନ, ବହିପତ୍ର, ଔଷଧପତ୍ର, ଧୁମ୍‌ଧଡ଼ସ୍, ବିକ୍ରିବଟା, କନ୍ଦାକଟା, ମସଲାମସଲି ଆଦି କହୁଁ ।

**ଅର୍ଥ ଥିବା ଓ ଅର୍ଥ ନଥିବା ଶବ୍ଦ ମିଶି ମଧ୍ୟ ଯୁଗ୍ମଶବ୍ଦ ଗଠିତ ହୁଏ ।**

(୪) ଛନ୍ଦାଛନ୍ଦି: ଏଠାରେ ଛନ୍ଦାଛନ୍ଦି ଗୋଟିଏ ପ୍ରକାର ପଦ, ଟିକିଏ ଭିନ୍ନ ଆକୃତିରେ ଦୋହରା ହୋଇଛି ମାତ୍ର । ସେହିପରି ଲଗାଲଗି, ପେଲାପେଲି, ଧସ୍ତାଧସ୍ତି, ଦଉଡ଼ାଦଉଡ଼ି, ପିଟାପିଟି, ସଜଡ଼ାସଜଡ଼ି, ଉଠାଉଠି ଏହି ଶ୍ରେଣୀରେ ଯାଇପାରେ ।

**ଗୋଟିଏ ପ୍ରକାର ଶବ୍ଦ ଟିକିଏ ଭିନ୍ନ ଆକୃତିରେ ଦୋହରାଯାଇ ଯୁଗ୍ମଶବ୍ଦ ଗଠିତ ହୋଇଥାଏ ।**

## ଅନୁଶୀଳନୀ

୧. ନିମ୍ନ ଲେଖାଗୁଡ଼ିକରେ ଯୁଗ୍ମଶବ୍ଦ ଚିହ୍ନାଅ ।

(କ) ଶିକାରକୁ ଯିବାକଥା ପଡ଼ିଲେ ସେ ଭୋକଶୋଷ ଭୁଲିଯାଏ ।

(ଖ) ଏଥିପାଇଁ ମତେ ହାଣିସାରିଲେ ବି ବୁଦା ଭିତରୁ ଟାଣିଓଟାରି ବାହାର କରିବା କଠିନ ହୁଏ ।

(ଗ) ବାଉଁଶ ଯଦି କଥା କହିପାରୁଥାଆନ୍ତା, ତା ନିଜ କାହାଣୀ ସେ ନିଜେ ଏମିତି ବନେଇଚୁନେଇ ବର୍ଣ୍ଣନା କରିଥାଆନ୍ତା ।

(ଘ) ଚାଷୀ ଲୋକେ ଗୋରୁଗାଈ, ସୁନାରୂପା, ଯାହା ଘରେ ଥିଲା ବିକିବାକି ଘରେ ପଡ଼ି ରହିଲେ ।

(ଙ) ନିକ୍ତି ଖୋଜିବାକୁ ତର ସହୁନାହିଁ, ଦରଦାମ୍ ବୁଝୁଛି କିଏ ?

(ଚ) ସମସ୍ତେ ଲଣ୍ଡଭଣ୍ଡ ହେବାର ଯେମନ୍ତ ବିଧିର ବିଧାନ

(ଛ) ଉପର ଦାଣ୍ଡରେ ଧାନଚାଉଳ ଆସିବାର ଉପାୟ ନଥିଲା ।

(ଜ) ସରକାର ବସ୍ତାବସ୍ତା ଶାଗୁଦାନା କଲିକତାରୁ ଅଣାଇ ଗୋଦାମରେ ଜମା କରି ରଖିଲେ ।

(ଝ) ସଭାସମିତିରେ ନ୍ୟାୟ ବିଚାରର ରୀତି

(ଞ) ସେନେହମମତା ସବୁଠୁ ଆଦର ଧନ

(ଟ) ମେଳାମଉଛବେ ଯହିଁ ମୁଁ ରହିଲି ମାତି ।

୨. ତଳେ ଦିଆଯାଇଥିବା ଯୁଗ୍ମଶବ୍ଦଗୁଡ଼ିକରୁ କେତେକ ଅଛି, କେତେକ ନାହିଁ । ଆବଶ୍ୟକସ୍ଥଳେ ପୂରଣକର ।

| | | |
|---|---|---|
| ହସ......... | ......ଖୁଡ଼ଟା | .........ମଜା |
| .......ଓଟରା | ଭାଇ........ | ........ମାୟା |
| .......ଶୋଷ | ରଙ୍ଗ......... | ......ଆପଣା |
| .........ବାଜ | ଯାନି........ | ବାଟ......... |
| ଧରା......... | ......ପାଟଣା | |

୩. 'କ' ସ୍ତମ୍ଭ ସହ 'ଖ' ସ୍ତମ୍ଭ ଯୋଗକର

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ପିଲା | ଅଶୁଭ |
| ଲୁଗା | ପାତାଳ |
| ଠେଙ୍ଗା | ବରଷା |
| ବାଉଳା | ଚାଉଳା |
| ଅଛି | ସାଠ |
| ଆକାଶ | ଠେଙ୍ଗି |
| ଖରା | ପଟା |
| ପାଠ | ସନ୍ଧି |
| ଶୁଭ | ଝିଲା |
| ବସା | ଉଠା |

୪. ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଯୁଗ୍ମଶବ୍ଦ ବାଛି ଶୂନ୍ୟସ୍ଥାନ ପୂରଣ କର ।

ଏଡ଼େ ପିଲାଟିଏ ହେଲୁଣି ତୋର...... ନାହିଁ । ଘରର......କୁ ତୁ ...... ବୋଲି ଭାବୁଛୁ ? ତୋର...... ମୋତେ ଆଦୌ ଭଲ ଲାଗୁନାହିଁ । ଘରେ...... କରୁନାହୁଁ କି ବାପାଙ୍କୁ ......କାମରେ ସାହାଯ୍ୟ କରୁ ନାହୁଁ । ସବୁବେଳେ ଯା ସାଙ୍ଗେ ତା ସାଙ୍ଗେ ...... ଓ ......ଚାଲିଛି । ଶେଷରେ ଆମର...... ପକାଇଲୁ । ତୋର......ଦେଖି ଲୋକେ ହସିଲେଣି ।

(ମାଟିଗୋଡ଼ି, ନାଁଗାଁ, କାମଦାମ, ମାଡ଼ପିଟ, ବୁଦ୍ଧିଶୁଦ୍ଧି, ଟଙ୍କାପଇସା, ଚାଲିଚଳଣି, ହାବଭାବ, କଳିକଜିଆ, ବିଲବାଡ଼ି)

# ସମୋଚ୍ଚାରିତ ଶବ୍ଦ

ତଳଲିଖିତ ବାକ୍ୟଗୁଡ଼ିକ ଭଲଭାବରେ ପଢ଼ ଓ ରେଖାଙ୍କିତ ପଦମାନଙ୍କୁ ଲକ୍ଷ୍ୟକର ।

"ଖୁଆଦଣ୍ଡରୁ ହାତ ଛାଡ଼, ଦେଉଛି ସର ଖୋଇକି ରେ"

ଏଠାରେ 'ସର' ଦୁଗ୍ଧ ସର । ଦୁଗ୍ଧକୁ ସିଝାଇଲେ ତା ଉପରେ ଯେଉଁ ବହଳିଆ ସ୍ୱାଦଯୁକ୍ତ ସର ବସିଯାଏ ।

"ବିକଶିତ ପଦ୍ମେ ଶୋଭିତ ସର" । ଏଠାରେ 'ସର' ଅର୍ଥ ପୁଷ୍କରିଣୀ ।

ଏବେ ଆଉ ଗୋଟିଏ ଉଦାହରଣ ଦେଖ ।

ଏବେ ସୁଦ୍ଧା ଧନୁଶର ଧରି ବଣଜଙ୍ଗଲର ଆଦିବାସୀମାନେ ନିଜକୁ ରକ୍ଷାକରନ୍ତି । (ଶର= ତୀର)

ଏଠାରେ 'ସର' ଓ 'ଶର' ପ୍ରାୟ ଏକାପରି ଉଚ୍ଚାରିତ ହେଲେ ମଧ୍ୟ ଏମାନଙ୍କର ଅର୍ଥଗତ ପାର୍ଥକ୍ୟ ରହିଛି । ଆମ ଭାଷାରେ ଏପରି ବହୁ ସଂଖ୍ୟକ ଶବ୍ଦ ଅଛି । ଏଗୁଡ଼ିକୁ **ସମୋଚ୍ଚାରିତ ଶବ୍ଦ** କୁହାଯାଏ ।

ତଳେ ତୁମ ବହିରୁ ସେହିଭଳି କେତେକ ସରଳ ଓ ସାଧାରଣ ପ୍ରଚଳିତ ସମୋଚ୍ଚାରିତ ଶବ୍ଦର ଆଲୋଚନା କରାଯାଉଅଛି ।

୧. **କୁଳ, କୂଳ:** "ଆତପ ସନ୍ତାପେ ସନ୍ତାପିତ ସର୍ବେ ପଶୁପକ୍ଷୀ ଜୀବକୁଳ" (ଜୀବସମୂହ)

ଚାହିଁଲେ ଏ କୂଳରୁ ସେ କୂଳକୁ ଆଖି ପାଉ ନାହିଁ (ତୀର, ତଟ)

ସୁଭାଷ ବୋଷ ଉଚ୍ଚକୁଳରେ ଜନ୍ମ ହୋଇଥିଲେ (ବଂଶ)

୨. **ଲକ୍ଷ, ଲକ୍ଷ୍ୟ:** "ଲକ୍ଷ ପାଇକ ବକ୍ଷ ଶୋଣିତେ ସିକ୍ତ ଯା ବୀର ମାଟି"

(ଏକ ସଂଖ୍ୟାବାଚକ ଶବ୍ଦ- ୧୦୦୦୦୦)

ଜୀବନର ଲକ୍ଷ୍ୟ ମହତ୍ ହେବା ଉଚିତ । (ଉଦ୍ଦେଶ୍ୟ)

୩. **କାଳ, କାଳ:** କ୍ରମେ ମଧୁଅନ୍ତେ ଆସଇ ଜଗତେ ଦାରୁଣ ନିଦାଘ କାଳ (ସମୟ)

କାଳର ବଶ ଏ ଜଗତ । ପ୍ରାଣୀଏ କାଳର ଆୟତ୍ତ (ମୃତ୍ୟୁ)

୪. **ମଠ, ମଠ:** "ଉଠ ହେ, ନକର ମଠ ହେ ମିତ ।" (ଡେରି)

ପୁରୀରେ ବହୁତ ବଡ଼ ବଡ଼ ମଠ ଅଛି । (ସାଧୁସନ୍ଥ ରହିବା ସ୍ଥାନ)

୫. **ପିତା, ପିତା:** ପିତା କରୁଥିବେ ଚିନ୍ତା ହେ ବେଳ ଉଚ୍ଛୁର ଚାହିଁ । (ପାଳନକର୍ତ୍ତା, ଜନ୍ମଦାତା)

ନିମ୍ବ ଖାଇବାକୁ ପିତା ଲାଗେ । (ଏକ ପ୍ରକାର ସ୍ୱାଦ)

୬. **ଭାଷିଲେ, ଭାସିଲେ:** 'ଭାଷିଲେ ଏତେ ସେ ବସିଲେ ଅଶ୍ୱ ଉପରେ ଯାଇଁ' । (କହିଲେ)

ଗତ ବନ୍ୟାରେ କେତେ ଯେ ଗାଈଗୋରୁ ଭାସିଲେ ତାର କଳନା ନାହିଁ । (ଭାସିଗଲେ)

୭. **ଧାର, ଧାର:** ଜଳଧାର ତୋର ସ୍ୱଚ୍ଛ, ଶୀତଳ । (ଧାରା)

ଛୁରୀଟିର ଧାର ଖୁବ୍ ତୀକ୍ଷ୍ଣ । (ଦାଢ଼)

କାହାଠାରୁ ଧାର ଆଣିବା ଭଲ ନୁହେଁ । (ଋଣ)

୮. **ଅମ୍ବର, ଅମ୍ବର:** ତପ୍ତ ଧୂଳି ରାଶି ତପତ ଅନିଳେ ଉଡ଼ି ଘୋଟଇ ଅମ୍ବର । (ଆକାଶ)

ଜୈନମାନଙ୍କ ଗୋଟିଏ ଗୋଷ୍ଠୀ ଶ୍ୱେତ ଅମ୍ବର ପରିଧାନ କରନ୍ତି । (ବସ୍ତ୍ର)

୯. **ରାଶି, ରାଶି:** ତପ୍ତ ଧୂଳିରାଶି ତପନ ଅନିଳେ ଉଡ଼ି ଘୋଟଇ ଅମ୍ବର । (ସମୂହ)

ରାଶିରୁ ରାଶିତେଲ ତିଆରି ହୁଏ । (ଏକ ପ୍ରକାର ତୈଳବୀଜ)

୧୦. **ଜାଳ, ଜାଳ:** ତୀକ୍ଷ୍ଣ ଶର ପ୍ରାୟେ ବର୍ଷଇ ତପନ ପ୍ରଚଣ୍ଡ କିରଣ ଜାଳ । (ସମୂହ)

ଘରେ ରୋଷେଇ କରିବାକୁ ଜାଳ ନାହିଁ । (ଜଳାହେବା ବସ୍ତୁ, ଜାଳେଣି)

୧୧. **ବାରି, ବାରି:** ବହେ ସ୍ୱେଦ ବାରି ସର୍ବେ ନରନାରୀ ଗ୍ରୀଷ୍ମ ସନ୍ତାପେ ଅସ୍ଥିର । (ଜଳ)

ଏତେବଡ଼ ଗାଈଗୋଠରେ ଆମ ଗାଈଟିକୁ ମୁଁ ବାରି ପାରିଲିନାହିଁ । (ଠଉରେଇବା)

୧୨. **ଶିଖୀ, ଶିଖି:** (କ) "ଘନେ ହେରି ଶିଖୀ ପୁଚ୍ଛ ପ୍ରସାରି ନାଚେ କରି କେକାରବ ।" (ମୟୂର)

(ଖ) ଶିଖୀର ଶିଖା ବାଜିଲେ ଘୃତ ଅକ୍ଳେଶରେ ତରଳିଯାଏ । (ଅଗ୍ନି)

(ଗ) ମୁଁ ତୁମଠାରୁ ଏହା ଶିଖି ଅନ୍ୟକୁ ଶିଖାଇଲି । (ଶିକ୍ଷାକରି)

୧୩. **ଦୀପ, ଦ୍ୱୀପ, ଦ୍ୱିପ:** (କ) ସନ୍ଧ୍ୟା ସମୟରେ ଘରେ ଦୀପ ଦିଆଯାଏ । (ବତି, ପ୍ରଦୀପ)

(ଖ) ଆମ ଏ ପୃଥିବୀରେ ବହୁ ଜଳଭାଗ, ସ୍ଥଳଭାଗ ଓ ଦ୍ୱୀପ ଦେଖାଯାଏ । (ଚାରିପଟେ ଜଳ ଥାଇ ମଝିରେ ସ୍ଥଳଭାଗ)

(ଗ) ଆଫ୍ରିକାର ଘନ ଅରଣ୍ୟରେ ବହୁ ସିଂହ, ବ୍ୟାଘ୍ର ଓ ଦ୍ୱିପ ବାସ କରନ୍ତି । (ହସ୍ତୀ)

୧୪. **ବଳି, ବଳୀ:** "ମାଟି ପ୍ରତିମା ଲୋ, ଯିବୁ କି କେବେ ମୋ ତହୁଁ ବଳି ?" (ଟପି, ଅତିକ୍ରମ କରି)

ଦୁର୍ଗାଙ୍କ ନିକଟରେ ପଶୁବଳି ଉଚିତ ନୁହେଁ । (ଯାଗ ଯଜ୍ଞରେ ଅର୍ପିତ ବସ୍ତୁ)

ପୂର୍ବେ ଆମ ଦେଶରେ ବହୁ ଜ୍ଞାନୀ, ମାନୀ ଓ ବଳୀ ବ୍ୟକ୍ତି ଥିଲେ । (ବଳବାନ୍)

୧୫. **ଗଡ଼. ଗଡ଼:** "କାହିଁ ବା ଭୂଷଣ ମୋ ବିନୁ କାହିଁ ନଗର ଗଡ଼" । (ଦୁର୍ଗ, ରାଜ୍ୟର ସଦର ମହକୁମା)

କାଠୁରିଆ କାଠଟିକୁ ଗଡଗଡ଼ କରି କାଟିଲା । (ଖଣ୍ଡଖଣ୍ଡ)

୧୬. **ପର, ପର:** "ଭାଇଙ୍କି ଭଗାରି କରୁ ତୁ, କରୁ ଆପଣା ପର ।" (ଶତ୍ରୁ)

ପକ୍ଷୀ ତାର ପର ସାହାଯ୍ୟରେ ଉଡ଼େ । (ଡେଣା)

୧୭. **ଜୀବନ, ଜୀବନ:** "ମୁହିଁ ଯେ ନିଖିଳ ଜୀବନ ନୋହୁ କାହାରି ତୁହି ।" (ପ୍ରାଣ)

ଜଳର ଅନ୍ୟନାମ ଜୀବନ । (ସଂଜ୍ଞାବାଚକ ବିଶେଷ୍ୟଟିଏ)

୧୮. **ଶୀତ, ଶିତ:** 'ଶୀତ ଆଉ ତୁଷାର ବର୍ଷାରେ' । (ଥଣ୍ଡା, ଶୀତଋତୁ)

ବୀର ଯୁବକ ହସ୍ତରେ ଶିତ ତରବାରୀ ଝଲସୁ ଥିଲା (ତୀକ୍ଷ୍ଣ)

୧୯. **କର, କର:** ଜମିର କର ଦିଆଯାଏ । (ଖଜଣା)

କର ଚରଣ ନଚଳଇ । (ହାତ)

ତପନ କର ହେଲା ପ୍ରଖର । (କିରଣ)

୨୦. **ନୀତି, ନିତି:** 'କହିଅଛି ନିତି ପ୍ରାତେ ଉଠି ।' (ପ୍ରତିଦିନ)

ପୁରୋହିତମାନେ ମନ୍ଦିରର ନୀତି ପାଳନ କରନ୍ତି । (ନିୟମ)

୨୧. **ପରି, ପରୀ:** ମାଘ ମାସ ଶୀତ ବାଘ ପରି । (ଭଳି, ସଦୃଶ)

ପିଲାମାନେ ପରୀ ରାଇଜର କାହାଣୀ ଶୁଣିବାକୁ ଭଲ ପାଆନ୍ତି । (ସ୍ୱର୍ଗର ଅପ୍ସରା ।)

୨୨. **ଚିର, ଚୀର:** ଚିର ଶ୍ରମ ତାହାର ଶପଥ । (ସବୁଦିନ)

ଦରିଦ୍ର ଲୋକମାନେ ଚୀରବସ୍ତ୍ର ପରିଧାନ କରନ୍ତି । (ଛିଣ୍ଡା)

୨୩. **ନିଶା, ନିଶା:** "ନିଶାକାଳେ ଆଗମନ ଆଶ୍ଚର୍ଯ୍ୟ ଏ କଥା ।" (ରାତ୍ରି)

ନିଶାଦ୍ରବ୍ୟ ସେବନ ସ୍ୱାସ୍ଥ୍ୟ ପକ୍ଷେ ହିତକର ନୁହେଁ । (ମାଦକ)

୨୪. **ବର, ବର:** "ପଡ଼ଇ କି ମନେ ସେହି କଥା ନୃପବର ।" (ଶ୍ରେଷ୍ଠ)

ରାଜା ତପସ୍ୟାରେ ବର ଲାଭ କଲେ । (ଆଶୀର୍ବାଦ)

ବରଗଛର ଛାଇ ଖୁବ୍ ଶୀତଳ । (ଏକଜାତୀୟ ଗଛର ନାମ)

ବେଦୀରେ ବିବାହ ସମୟରେ ବରକନ୍ୟା ବସନ୍ତି । (ବାହାହେଉଥିବା ପୁରୁଷ)

୨୫. **ମତ୍ତ, ମତ:** ଖାଦ୍ୟ ବିଷୟରେ ଚିନ୍ତା ନ କରି ହସ ଖୁସିରେ ମତ୍ତ ହୁଅ । (ବିଭୋର)

ମତ୍ତ ହସ୍ତୀକୁ ଆୟତ୍ତ କରାହେଲା । (ପାଗଳ)

ଏ ବିଷୟରେ ତୁମର ମତ କଅଣ । (ମନର ଭାବ)

## ଅନୁଶୀଳନୀ

୧. ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଶବ୍ଦ ବାଛି ଶୂନ୍ୟସ୍ଥାନ ପୂରଣ କର ।

(କ)......ଙ୍କ ପ୍ରତି ଦୟାକର । (ଦୀନ, ଦିନ)

(ଖ) ତୁମେ ମୋର ଶ୍ରେଷ୍ଠ ...... । (ପରିଷଦ, ପାରିଷଦ)

(ଗ) ରାଜ ....... ପରିଧାନ କରି ସେ ସିଂହାସନରେ ଉପବିଷ୍ଟ ହେଲେ । (ପରିଚ୍ଛଦ, ପରିଚ୍ଛେଦ)

(ଘ) ପଶୁ .......କୁ ସମସ୍ତେ ନିନ୍ଦା କରିବା ଉଚିତ । (ବଦ୍ଧ, ବଧ)

(ଙ) ଗ୍ରୀଷ୍ମକାଳରେ .......ଛତ୍ର ଦିଆଯାଏ । (ଅର୍ଣ୍ଣ, ଅନ୍ନ)

(ଚ) .......ବୃକ୍ଷରେ ବଉଳ ଧରିଛି । (ଚ୍ୟୁତ, ଚୂତ)

(ଛ) ଗଙ୍ଗାର ଜଳ ....... । (ପୁତ, ପୂତ)

(ଜ) କୋକିଳର ....... ଜନମନ ହରଣ କରେ । (କୁଜନ, କୂଜନ)

(ଝ) ଦୁର୍ଘଟଣାରେ ବହୁ ଲୋକ ....... ହୋଇ ଡାକ୍ତରଖାନାକୁ ଗଲେ । (ନିହତ, ଆହତ)

(ଞ) ହଂସଟି ପୁଷ୍କରିଣୀରେ ଏଣେତେଣେ ବୁଲି ....... ଭକ୍ଷଣ କରୁଅଛି । (ବିସ, ବିଷ)

୨. ଅର୍ଥ ସମାନତା ଦୃଷ୍ଟିରୁ 'କ' ସ୍ତମ୍ଭ ସହ 'ଖ' ସ୍ତମ୍ଭ ଯୋଗକର ।

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ବାଣୀ | ଉପକରଣ |
| ତପନ | ଅବହେଳା |
| ମଧୁ | ସରସ୍ୱତୀ |
| ବଳୀ | ନିକଟ |
| ପାଶ | ଜଳ |
| ଅମ୍ବର | ଆକାଶ |
| ଶଙ୍କର | ସୂର୍ଯ୍ୟ |
| ଉପାଦାନ | ବଳବାନ୍ |
| ଉପେକ୍ଷା | ମହୁ |
| ସଳିଳ | ଶିବ |

୩. ନିମ୍ନଲିଖିତ ଶବ୍ଦଗୁଡ଼ିକୁ ନେଇ ଦୁଇଟି ଲେଖାଏଁ ଅର୍ଥରେ ବାକ୍ୟଗଠନ କର ।

ରାଗ, ପାଗ, ପିତା, ମଠ, ପୁର, ନବ ।



# ତଦ୍ଧିତ

ଶବ୍ଦରୁ ଶବ୍ଦ ଗଠିତ ହେଲେ ସେହି ଗଠିତ ଶବ୍ଦକୁ **ତଦ୍ଧିତ ଶବ୍ଦ** କହନ୍ତି । ମୂଳ ଶବ୍ଦରୁ ଯେଉଁ ପ୍ରତ୍ୟୟ ଯୁକ୍ତ ହୋଇ ତଦ୍ଧିତ ଶବ୍ଦ ଗଠିତ ହୁଏ, ତାହାକୁ **ତଦ୍ଧିତ ପ୍ରତ୍ୟୟ** କହନ୍ତି । ତଦ୍ଧିତ ପ୍ରତ୍ୟୟ ବିଭିନ୍ନ ଅର୍ଥରେ ପ୍ରଯୁକ୍ତ ହୁଏ । ତଳେ କେତେଗୁଡ଼ିଏ ତଦ୍ଧିତ ପ୍ରତ୍ୟୟର ଉଦାହରଣ ଦିଆଗଲା ଏବଂ ସେଗୁଡ଼ିକୁ ଯୋଗ କରି ମୂଳ ଶବ୍ଦରୁ ବିଭିନ୍ନ ଅର୍ଥରେ ତଦ୍ଧିତ ଶବ୍ଦ ଗଠନ କରିବା ଦର୍ଶାଗଲା ।

**୧. ଅ ପ୍ରତ୍ୟୟ**

(କ) ଭକ୍ତ ବା ଉପାସକ ଅର୍ଥରେ, ଯେପରି ଶିବଙ୍କ ଭକ୍ତ ବା ଉପାସକ= ଶୈବ

ଶିବ + ଅ = ଶୈବ
ବିଷ୍ଣୁ + ଅ = ବୈଷ୍ଣବ
ବୁଦ୍ଧ + ଅ = ବୌଦ୍ଧ
ଜିନ + ଅ = ଜୈନ
ଶକ୍ତି + ଅ = ଶାକ୍ତ
ସୂର + ଅ = ସୌର

(ଖ) ଭାବ (ଗୁଣ ବା କର୍ମ) ଅର୍ଥରେ, ଯେପରି ମୁନିଙ୍କ ଭାବ = ମୌନ

ମୁନି + ଅ = ମୌନ
କୁଶଳ + ଅ = କୌଶଳ
ଲଘୁ + ଅ = ଲାଘବ
ପଟୁ + ଅ = ପାଟବ
ଗୁରୁ + ଅ = ଗୌରବ
ସୁରଭି + ଅ = ସୌରଭ

(ଗ) ଅପତ୍ୟ (ସନ୍ତାନ) ଅର୍ଥରେ, ଯେପରି ବସୁଦେବଙ୍କ ସନ୍ତାନ = ବାସୁଦେବ

ବସୁଦେବ + ଅ = ବାସୁଦେବ
ରଘୁ + ଅ = ରାଘବ
କୁରୁ + ଅ = କୌରବ
ଯଦୁ + ଅ = ଯାଦବ
ଭୃଗୁ + ଅ = ଭାର୍ଗବ
ପୁତ୍ର + ଅ = ପୌତ୍ର

(ଘ) ନିବାସୀ ବା ଜାତ ଅର୍ଥରେ, ଯେପରି ମଗଧର ନିବାସୀ ବା ମଗଧରେ ଜାତ ମାଗଧ ।

| | |
|---|---|
| ମଗଧ + ଅ = ମାଗଧ | ନିଷଧ + ଅ = ନୈଷଧ |
| ଶରଦ + ଅ = ଶାରଦ | ତିଳ + ଅ = ତୈଳ |
| ଅରଣ୍ୟ + ଅ = ଆରଣ୍ୟ | ଜନପଦ + ଅ = ଜାନପଦ |
| ଭୂମି + ଅ = ଭୌମ | ପୁର + ଅ = ପୌର |

(ଙ) ସମ୍ବନ୍ଧୀୟ ଅର୍ଥରେ, ଯେପରି ଅସୁର ସମ୍ବନ୍ଧୀୟ = ଆସୁର

| | |
|---|---|
| ଅସୁର + ଅ = ଆସୁର | ପୃଥିବୀ + ଅ = ପାର୍ଥିବ |
| ପଶୁ + ଅ = ପାଶବ | ଭରତ + ଅ = ଭାରତ |
| ଜନ୍ତୁ + ଅ = ଜାନ୍ତବ | ରୁଦ୍ର + ଅ = ରୌଦ୍ର |
| ସିନ୍ଧୁ + ଅ = ସୈନ୍ଧବ | ଚକ୍ଷୁଷ୍ + ଅ = ଚାକ୍ଷୁଷ |

(ଚ) ସଂଯୋଗ ଅର୍ଥରେ ଯେପରି ମଘା ନକ୍ଷତ୍ର ସଂଯୋଗରେ ଯେଉଁ ମାସ = ମାଘ

| | |
|---|---|
| ମଘା + ଅ = ମାଘ | ଚିତ୍ରା + ଅ = ଚୈତ୍ର |
| ପୁଷ୍ୟା + ଅ = ପୌଷ | ଅଶ୍ୱିନୀ + ଅ = ଆଶ୍ୱିନ |
| ଶ୍ରବଣା + ଅ = ଶ୍ରାବଣ | ମୃଗଶିରା + ଅ = ମାର୍ଗଶିର |
| ବିଶାଖା + ଅ = ବୈଶାଖ | କୃତ୍ତିକା + ଅ = କାର୍ତ୍ତିକ |

**୨. ଇକ ପ୍ରତ୍ୟୟ**

(କ) ସମ୍ବନ୍ଧୀୟ ଅର୍ଥରେ, ଯେପରି ସମାଜ ସମ୍ବନ୍ଧୀୟ = ସାମାଜିକ

| | |
|---|---|
| ସମାଜ + ଇକ = ସାମାଜିକ | ଶରୀର + ଇକ = ଶାରୀରିକ |
| ପ୍ରଦେଶ + ଇକ = ପ୍ରାଦେଶିକ | ବର୍ଷ + ଇକ = ବାର୍ଷିକ |
| ଦିନ + ଇକ = ଦୈନିକ | ମାସ + ଇକ = ମାସିକ |
| ବେଦ + ଇକ = ବୈଦିକ | କୁଳ + ଇକ = କୌଳିକ |
| ସଂସାର + ଇକ = ସାଂସାରିକ | ଜଗତ + ଇକ = ଜାଗତିକ |

(ଖ) ପ୍ରବୀଣ ଅର୍ଥରେ, ଯେପରି ବିଜ୍ଞାନରେ ପ୍ରବୀଣ= ବୈଜ୍ଞାନିକ

ବିଜ୍ଞାନ + ଇକ = ବୈଜ୍ଞାନିକ　　ସାହିତ୍ୟ + ଇକ = ସାହିତ୍ୟିକ

ଦର୍ଶନ + ଇକ = ଦାର୍ଶନିକ　　ତର୍କ + ଇକ = ତାର୍କିକ

ବ୍ୟାକରଣ + ଇକ = ବୈୟାକରଣିକ　　ନ୍ୟାୟ + ଇକ = ନୈୟାୟିକ

**(୩) ଯ ପ୍ରତ୍ୟୟ**

(କ) ଅପତ୍ୟ (ସନ୍ତାନ) ଅର୍ଥରେ, ଯେପରି ଦିତିଙ୍କ ସନ୍ତାନ = ଦୈତ୍ୟ

ଦିତି + ଯ = ଦୈତ୍ୟ　　ଜମଦଗ୍ନି + ଯ = ଜାମଦଗ୍ନ୍ୟ

ଅଦିତି + ଯ = ଆଦିତ୍ୟ　　ଚଣକ + ଯ = ଚାଣକ୍ୟ

ଗର୍ଗ + ଯ = ଗାର୍ଗ୍ୟ　　ପୁଲସ୍ତି + ଯ = ପୌଲସ୍ତ୍ୟ

(ଯ ପ୍ରତ୍ୟୟକୁ ଯ ପ୍ରତ୍ୟୟ ମଧ୍ୟ କୁହାଯାଏ)

(ଖ) ଭାବ ଅର୍ଥରେ, ଯେପରି ପଣ୍ଡିତଙ୍କ ଭାବ = ପାଣ୍ଡିତ୍ୟ

ପଣ୍ଡିତ + ଯ = ପାଣ୍ଡିତ୍ୟ　　ସୁଜନ + ଯ = ସୌଜନ୍ୟ

ସମର୍ଥ + ଯ = ସାମର୍ଥ୍ୟ　　ସମ + ଯ = ସାମ୍ୟ

ସୁନ୍ଦର + ଯ = ସୌନ୍ଦର୍ଯ୍ୟ　　ବିଷମ + ଯ = ବୈଷମ୍ୟ

ମଧୁର + ଯ = ମାଧୁର୍ଯ୍ୟ　　ସହିତ + ଯ = ସାହିତ୍ୟ

ଉଦାର + ଯ = ଔଦାର୍ଯ୍ୟ　　ଅଳସ + ଯ = ଆଳସ୍ୟ

(ଗ) ସମ୍ବନ୍ଧୀୟ ଅର୍ଥରେ, ଯେପରି କଣ୍ଠ ସମ୍ବନ୍ଧୀୟ = କଣ୍ଠ୍ୟ

କଣ୍ଠ + ଯ = କଣ୍ଠ୍ୟ　　ମୂର୍ଦ୍ଧନ୍ + ଯ = ମୂର୍ଦ୍ଧନ୍ୟ

ଓଷ୍ଠ + ଯ = ଓଷ୍ଠ୍ୟ　　ଗୃହସ୍ଥ + ଯ = ଗାର୍ହସ୍ଥ୍ୟ

ଦନ୍ତ + ଯ = ଦନ୍ତ୍ୟ　　ଗୋ + ଯ = ଗବ୍ୟ

ତାଳୁ + ଯ = ତାଲବ୍ୟ　　ଦିବ୍ + ଯ = ଦିବ୍ୟ

ବାୟୁ + ଯ = ବାୟବ୍ୟ　　ଈଶାନ + ଯ = ଐଶାନ୍ୟ

(ଘ) ଜାତ ବା ସମ୍ବନ୍ଧୀୟ ଅର୍ଥରେ, ଯେପରି ବନସମ୍ବନ୍ଧୀୟ ବା ବନରେ ଜାତ = ବନ୍ୟ

ବନ + ଯ = ବନ୍ୟ
ଗ୍ରାମ + ଯ = ଗ୍ରାମ୍ୟ
ପର୍ବତ + ଯ = ପାର୍ବତ୍ୟ
ପଶ୍ଚାତ୍ + ଯ = ପାଶ୍ଚାତ୍ୟ
ଆଦି + ଯ = ଆଦ୍ୟ
ଅନ୍ତ + ଯ = ଅନ୍ତ୍ୟ
ପ୍ରାଚୀ + ଯ = ପ୍ରାଚ୍ୟ
ପ୍ରତୀଚୀ + ଯ = ପ୍ରତୀଚ୍ୟ

(ଙ) କର୍ମ ଅର୍ଥରେ, ଯେପରି ଦୂତର କର୍ମ = ଦୌତ୍ୟ

ଦୂତ + ଯ = ଦୌତ୍ୟ
ପୁରୋହିତ + ଯ = ପୌରୋହିତ୍ୟ
ଚୋର + ଯ = ଚୌର୍ଯ୍ୟ
ବଣିଜ + ଯ = ବାଣିଜ୍ୟ

## ୪. ଈୟ ପ୍ରତ୍ୟୟ

ଜାତ ବା ସମ୍ବନ୍ଧୀୟ ଅର୍ଥରେ, ଯେପରି ଜଳରେ ଜାତ ବା ଜଳ ସମ୍ବନ୍ଧୀୟ = ଜଳୀୟ

ଜଳ + ଈୟ = ଜଳୀୟ
ବାଷ୍ପ + ଈୟ = ବାଷ୍ପୀୟ
ଶରଦ୍ + ଈୟ = ଶାରଦୀୟ
ଜାତି + ଈୟ = ଜାତୀୟ
ଆତ୍ମା + ଈୟ = ଆତ୍ମୀୟ
ରାଷ୍ଟ୍ର + ଈୟ = ରାଷ୍ଟ୍ରୀୟ
ଉତ୍କଳ + ଈୟ = ଉତ୍କଳୀୟ
ବଙ୍ଗ + ଈୟ = ବଙ୍ଗୀୟ
ବିଦେଶ + ଈୟ = ବିଦେଶୀୟ
ଦେଶ + ଈୟ = ଦେଶୀୟ
ଯାବତ୍ + ଈୟ = ଯାବତୀୟ
ଭବଦ୍ + ଈୟ = ଭବଦୀୟ
ମାନବ + ଈୟ = ମାନବୀୟ
ଦାନବ + ଈୟ = ଦାନବୀୟ
ଭାରତ + ଈୟ = ଭାରତୀୟ
ସଂପାଦକ + ଈୟ = ସଂପାଦକୀୟ

## ୫. ଏୟ ପ୍ରତ୍ୟୟ

ଅପତ୍ୟ (ସନ୍ତାନ) ଅର୍ଥରେ, ଯେପରି କୁନ୍ତୀଙ୍କ ସନ୍ତାନ = କୌନ୍ତେୟ

ରାଧା + ଏୟ = ରାଧେୟ
ଗଙ୍ଗା + ଏୟ = ଗାଙ୍ଗେୟ
ଶକୁନ୍ତଳା + ଏୟ = ଶାକୁନ୍ତଳେୟ
କୃତ୍ତିକା + ଏୟ = କାର୍ତ୍ତିକେୟ
ବିମାତୃ + ଏୟ = ବୈମାତ୍ରେୟ
ଭଗିନୀ + ଏୟ = ଭାଗିନେୟ
ବିନତା + ଏୟ = ବୈନତେୟ
ସୁଭଦ୍ରା + ଏୟ = ସୌଭଦ୍ରେୟ

### ୬. ବତ୍ ବା ମତ୍ ପ୍ରତ୍ୟୟ

ଅଛି ଅର୍ଥରେ, ଯେପରି ଗୁଣ ଅଛି ଯାହାର = ଗୁଣବାନ୍, ଗୁଣ ଅଛି ଯେଉଁ ନାରୀର = ଗୁଣବତୀ

| | |
|---|---|
| ଗୁଣ + ବତ୍ = ଗୁଣବାନ୍ | ସ୍ତ୍ରୀଲିଙ୍ଗେ ଗୁଣବତୀ |
| ଧନ + ବତ୍ = ଧନବାନ୍ | ସ୍ତ୍ରୀଲିଙ୍ଗେ ଧନବତୀ |
| ଦୟା + ବତ୍ = ଦୟାବାନ୍ | ସ୍ତ୍ରୀଲିଙ୍ଗେ ଦୟାବତୀ |
| ବୁଦ୍ଧି + ମତ୍ = ବୁଦ୍ଧିମାନ୍ | ସ୍ତ୍ରୀଲିଙ୍ଗେ ବୁଦ୍ଧିମତୀ |
| ଶ୍ରୀ + ମତ୍ = ଶ୍ରୀମାନ୍ | ସ୍ତ୍ରୀଲିଙ୍ଗେ ଶ୍ରୀମତୀ |
| କୀର୍ତ୍ତି + ମତ୍ = କୀର୍ତ୍ତିମାନ୍ | ସ୍ତ୍ରୀଲିଙ୍ଗେ କୀର୍ତ୍ତିମତୀ |
| ମୂର୍ତ୍ତି + ମତ୍ = ମୂର୍ତ୍ତିମାନ୍ | ସ୍ତ୍ରୀଲିଙ୍ଗେ ମୂର୍ତ୍ତିମତୀ |

### ୭. ବିନ୍ ପ୍ରତ୍ୟୟ

ଅଛି ଅର୍ଥରେ, ଯେପରି ମେଧା ଅଛି ଯାହାର ମେଧାବୀ, ମେଧା ଅଛି ଯେଉଁ ନାରୀର = ମେଧାବିନୀ

| | |
|---|---|
| ମେଧା + ବିନ୍ = ମେଧାବୀ | ସ୍ତ୍ରୀଲିଙ୍ଗେ ମେଧାବିନୀ |
| ମାୟା + ବିନ୍ = ମାୟାବୀ | ସ୍ତ୍ରୀଲିଙ୍ଗେ ମାୟାବିନୀ |
| ତପସ୍ + ବିନ୍ = ତପସ୍ୱୀ | ସ୍ତ୍ରୀଲିଙ୍ଗେ ତପସ୍ୱିନୀ |
| ତେଜସ୍ + ବିନ୍ = ତେଜସ୍ୱୀ | ସ୍ତ୍ରୀଲିଙ୍ଗେ ତେଜସ୍ୱିନୀ |

### ୮. ଇନ୍ ପ୍ରତ୍ୟୟ

ଅଛି ଅର୍ଥରେ, ଯେପରି ସାହସ ଅଛି ଯାହାର = ସାହସୀ, ସାହସ ଅଛି ଯେଉଁ ନାରୀର = ସାହସିନୀ

| | |
|---|---|
| ସାହସ + ଇନ୍ = ସାହସୀ | ସ୍ତ୍ରୀଲିଙ୍ଗେ ସାହସିନୀ |
| ମାନ + ଇନ୍ = ମାନୀ | ସ୍ତ୍ରୀଲିଙ୍ଗେ ମାନିନୀ |
| ଅହଂକାର + ଇନ୍ = ଅହଂକାରୀ | ସ୍ତ୍ରୀଲିଙ୍ଗେ ଅହଂକାରିଣୀ |
| ହସ୍ତ + ଇନ୍ = ହସ୍ତୀ | ସ୍ତ୍ରୀଲିଙ୍ଗେ ହସ୍ତିନୀ |
| ଦୁଃଖ + ଇନ୍ = ଦୁଃଖୀ | ସ୍ତ୍ରୀଲିଙ୍ଗେ ଦୁଃଖିନୀ |
| ଅନୁରାଗ + ଇନ୍ = ଅନୁରାଗୀ | ସ୍ତ୍ରୀଲିଙ୍ଗେ ଅନୁରାଗିଣୀ |

## ୯. ତା ପ୍ରତ୍ୟୟ

ଭାବ ଅର୍ଥରେ, ଯେପରି ପ୍ରଭୁର ଭାବ = ପ୍ରଭୁତା

ପ୍ରଭୁ + ତା = ପ୍ରଭୁତା
ପଶୁ + ତା = ପଶୁତା
ମୂର୍ଖ + ତା = ମୂର୍ଖତା
ଭୀରୁ + ତା = ଭୀରୁତା
ନିରପେକ୍ଷ + ତା = ନିରପେକ୍ଷତା

ଉପକାରୀ + ତା = ଉପକାରିତା
ପ୍ରତିଯୋଗୀ + ତା = ପ୍ରତିଯୋଗିତା
ବୁଦ୍ଧିମାନ୍ + ତା = ବୁଦ୍ଧିମତ୍ତା
ବିଦ୍ୱାନ୍ + ତା = ବିଦ୍ୱତ୍ତା
ସାରବାନ୍ + ତା = ସାରବତ୍ତା

## ୧୦. ତ୍ୱ ପ୍ରତ୍ୟୟ

ଭାବ ଅର୍ଥରେ, ଯେପରି ପ୍ରଭୁର ଭାବ = ପ୍ରଭୁତ୍ୱ

ପ୍ରଭୁ + ତ୍ୱ = ପ୍ରଭୁତ୍ୱ
ଗୁରୁ + ତ୍ୱ = ଗୁରୁତ୍ୱ
ମହତ୍ + ତ୍ୱ = ମହତ୍ତ୍ୱ

ଦାୟୀ + ତ୍ୱ = ଦାୟିତ୍ୱ
ସ୍ଥାୟୀ + ତ୍ୱ = ସ୍ଥାୟିତ୍ୱ
ନେତୃ + ତ୍ୱ = ନେତୃତ୍ୱ

## ୧୧. ଇତ ପ୍ରତ୍ୟୟ

ଜାତ ଅର୍ଥରେ, ଯେପରି ପୁଷ୍ପ ଜାତ ହୋଇଛି ଯହିଁରେ = ପୁଷ୍ପିତ

ପୁଷ୍ପ + ଇତ = ପୁଷ୍ପିତ
ଫଳ + ଇତ = ଫଳିତ
ତାରକା + ଇତ = ତାରକିତ
ରୋମାଞ୍ଚ + ଇତ = ରୋମାଞ୍ଚିତ

କଣ୍ଟକ + ଇତ = କଣ୍ଟକିତ
ପଲ୍ଲବ + ଇତ = ପଲ୍ଲବିତ
ନିଦ୍ରା + ଇତ = ନିଦ୍ରିତ
ପୁଲକ + ଇତ = ପୁଲକିତ

## ୧୨. ମୟ ପ୍ରତ୍ୟୟ

ବ୍ୟାପ୍ତି ବା ନିର୍ମିତ ଅର୍ଥରେ, ଯେପରି ଜଳରେ ବ୍ୟାପ୍ତ = ଜଳମୟ
ମୃତ୍‌ରେ (ମାଟିରେ) ନିର୍ମିତ = ମୃଣ୍ମୟ

ଜଳ + ମୟ = ଜଳମୟ
ତେଜଃ + ମୟ = ତେଜୋମୟ
ଜ୍ଞାନ + ମୟ = ଜ୍ଞାନମୟ

ମୃତ୍ + ମୟ = ମୃଣ୍ମୟ
ଚିତ୍ + ମୟ = ଚିନ୍ମୟ
ପ୍ରେମ + ମୟ = ପ୍ରେମମୟ

**୧୩. ତନ ପ୍ରତ୍ୟୟ**

ଜାତ ଅର୍ଥରେ, ଯେପରି ପୁରା (ପୂର୍ବକାଳରେ) ଜାତ = ପୁରାତନ

ପୁରା + ତନ = ପୁରାତନ　　　　ପୂର୍ବ + ତନ = ପୂର୍ବତନ

ପ୍ରାକ୍ + ତନ = ପ୍ରାକ୍ତନ　　　　ଚିରମ୍ + ତନ = ଚିରନ୍ତନ

**୧୪. ଇମା ପ୍ରତ୍ୟୟ**

ଭାବ ଅର୍ଥରେ, ଯେପରି ମହତ୍‌ର ଭାବ = ମହିମା

ମହତ୍ + ଇମା = ମହିମା　　　　ଦୀର୍ଘ + ଇମା = ଦ୍ରାଘିମା

ଲଘୁ + ଇମା = ଲଘିମା　　　　ନୀଳ + ଇମା = ନୀଳିମା

ଗୁରୁ + ଇମା = ଗରିମା　　　　କାଳ + ଇମା = କାଳିମା

**୧୫. ତର, ତମ ପ୍ରତ୍ୟୟ**

ତୁଳନା ଅର୍ଥରେ

ଉଚ୍ଚ + ତର = ଉଚ୍ଚତର　　　　ଉଚ୍ଚ + ତମ = ଉଚ୍ଚତମ

କ୍ଷୁଦ୍ର + ତର = କ୍ଷୁଦ୍ରତର　　　　କ୍ଷୁଦ୍ର + ତମ = କ୍ଷୁଦ୍ରତମ

ମହତ୍ + ତର = ମହତ୍ତର　　　　ମହତ୍ + ତମ = ମହତ୍ତମ

ବୃହତ୍ + ତର = ବୃହତ୍ତର　　　　ବୃହତ୍ + ତମ = ବୃହତ୍ତମ

ପ୍ରିୟ + ତର = ପ୍ରିୟତର　　　　ପ୍ରିୟ + ତମ = ପ୍ରିୟତମ

(ଦୁଇଟି ମଧ୍ୟରେ ତୁଳନା କରାଗଲେ 'ତର' ପ୍ରତ୍ୟୟ ଏବଂ ବହୁତ ମଧ୍ୟରେ ତୁଳନା କରାଗଲେ 'ତମ' ପ୍ରତ୍ୟୟ ଲାଗେ ।)

**୧୬. ସାତ୍ ପ୍ରତ୍ୟୟ**

ପରିଣତ ଅର୍ଥରେ, ଯେପରି ଧୂଳିରେ ପରିଣତ = ଧୂଳିସାତ୍

ଧୂଳି + ସାତ୍ = ଧୂଳିସାତ୍　　　　ଭସ୍ମ + ସାତ୍ = ଭସ୍ମସାତ୍

ଆତ୍ମ + ସାତ୍ = ଆତ୍ମସାତ୍　　　　ଅଗ୍ନି + ସାତ୍ = ଅଗ୍ନିସାତ୍

**୧୭. ବତ୍ ପ୍ରତ୍ୟୟ**

ତୁଲ୍ୟ ଅର୍ଥରେ, ଯେପରି ମାତୃ (ମାଆ)ଙ୍କ ତୁଲ୍ୟ = ମାତୃବତ୍

ମାତୃ + ବତ୍ = ମାତୃବତ୍ ପୁତ୍ର + ବତ୍ = ପୁତ୍ରବତ୍
ପିତୃ + ବତ୍ = ପିତୃବତ୍ ଆତ୍ମ + ବତ୍ = ଆତ୍ମବତ୍

**୧୮. ଆ ପ୍ରତ୍ୟୟ**

(କ) ଅଛି ଅର୍ଥରେ, ଯେପରି ଗଣ୍ଠି ଅଛି ଯହିଁରେ ବା ଯାହାର = ଗଣ୍ଠିଆ

ଗଣ୍ଠି + ଆ = ଗଣ୍ଠିଆ ଦାଢ଼ି + ଆ = ଦାଢ଼ିଆ
କୁଜ + ଆ = କୁଜା ଚୁଟି + ଆ = ଚୁଟିଆ
ଦନ୍ତ + ଆ = ଦନ୍ତା ଧୂଳି + ଆ = ଧୂଳିଆ

(ଖ) ଜାତ ଅର୍ଥରେ, ଯେପରି ପଶ୍ଚିମରୁ ଜାତ = ପଶ୍ଚିମା

ପଶ୍ଚିମ + ଆ = ପଶ୍ଚିମା ପୋଖରୀ + ଆ = ପୋଖରିଆ
ଉତ୍ତର + ଆ = ଉତ୍ତରା ରାତି + ଆ = ରାତିଆ

**୧୯. ଆରି ପ୍ରତ୍ୟୟ**

ବୃତ୍ତି (ଜୀବିକା) ଅର୍ଥରେ, ଯେପରି ଶଙ୍ଖା ବୃତ୍ତି ଯାହାର = ଶଙ୍ଖାରି

ଶଙ୍ଖା + ଆରି = ଶଙ୍ଖାରି ଭିକ + ଆରି = ଭିକାରି
କଂସା + ଆରି = କଂସାରି ସୁନା + ଆରି = ସୁନାରି

**୨୦. ଆଳ ପ୍ରତ୍ୟୟ**

(କ) ବୃତ୍ତି ଅର୍ଥରେ, ଯେପରି ଗାଈ ଚରାଇବା ବୃତ୍ତି (କାମ) ଯାହାର = ଗାଈଆଳ

ଗାଈ + ଆଳ = ଗାଈଆଳ ମଇଁଷି + ଆଳ = ମଇଁଷିଆଳ

(ଖ) ଅଛି ଅର୍ଥରେ, ଯେପରି ଶିଙ୍ଗ ଅଛି ଯାହାର = ଶିଙ୍ଗାଳ

ଶିଙ୍ଗ + ଆଳ = ଶିଙ୍ଗାଳ ଗଣ୍ଠି + ଆଳ = ଗଣ୍ଠିଆଳ

**୨୧. ଆଳି ପ୍ରତ୍ୟୟ**

ଜାତ ଅର୍ଥରେ, ଯେପରି ଚଇତ ମାସରେ ଜାତ = ଚଇତାଳି

ଚଇତ + ଆଳି = ଚଇତାଳି ବଙ୍ଗ + ଆଳି = ବଙ୍ଗାଳି

## ୨୨. ଇ ପ୍ରତ୍ୟୟ

(କ) କର୍ମ ଅର୍ଥରେ, ଯେପରି ଡାକ୍ତରଙ୍କ କର୍ମ = ଡାକ୍ତରି

ଡାକ୍ତର + ଇ = ଡାକ୍ତରି        ପୁରୋହିତ + ଇ = ପୁରୋହିତି

ମାଷ୍ଟର + ଇ = ମାଷ୍ଟରି        ମୋହରିର + ଇ = ମୋହରିରି

ମୁକ୍ତାର + ଇ = ମୁକ୍ତାରି

(ଖ) କ୍ଷୁଦ୍ର ଅର୍ଥରେ, ଯେପରି କ୍ଷୁଦ୍ର ଚକ = ଚକି

ଚକ + ଇ = ଚକି        କାଠ + ଇ = କାଠି

ଛଡ଼ + ଇ = ଛଡ଼ି        ଘଣ୍ଟ + ଇ = ଘଣ୍ଟି

## ୨୩. ଈ ପ୍ରତ୍ୟୟ

ଜାତ ବା ସମ୍ବନ୍ଧୀୟ ଅର୍ଥରେ, ଯେପରି ସ୍ୱଦେଶରେ ଜାତ ବା ସ୍ୱଦେଶ ସମ୍ବନ୍ଧୀୟ = ସ୍ୱଦେଶୀ

ସ୍ୱଦେଶ + ଈ = ସ୍ୱଦେଶୀ        ପାହାଡ଼ + ଈ = ପାହାଡ଼ୀ

କଟକ + ଈ = କଟକୀ        ବାଲେଶ୍ୱର + ଈ = ବାଲେଶ୍ୱରୀ

ବ୍ରହ୍ମପୁର + ଈ = ବ୍ରହ୍ମପୁରୀ        ସମ୍ବଲପୁର + ଈ = ସମ୍ବଲପୁରୀ

## ୨୪. ଇଆ ପ୍ରତ୍ୟୟ

(କ) ଜାତ ବା ସମ୍ବନ୍ଧୀୟ ଅର୍ଥରେ, ଯେପରି କଟକରେ ଜାତ ବା କଟକ ସମ୍ବନ୍ଧୀୟ = କଟକିଆ

କଟକ + ଇଆ = କଟକିଆ        ସମ୍ବଲପୁର + ଇଆ = ସମ୍ବଲପୁରିଆ

ପାହାଡ଼ + ଇଆ = ପାହାଡ଼ିଆ        ସହର + ଇଆ = ସହରିଆ

(ଖ) ବୃତ୍ତି (ଜୀବିକା) ଅର୍ଥରେ, ଯେପରି ହଳ କରିବା ବୃତ୍ତି ଯାହାର = ହଳିଆ

ହଳ + ଇଆ = ହଳିଆ        ଢୋଲ + ଇଆ = ଢୋଲିଆ

ଜାଲ + ଇଆ = ଜାଲିଆ        ଶଗଡ଼ + ଇଆ = ଶଗଡ଼ିଆ

(ଗ) ସଦୃଶ ବା ରଞ୍ଜିତ ଅର୍ଥରେ, ଯେପରି ପାଉଁଶ ସଦୃଶ ବା ପାଉଁଶରେ ରଞ୍ଜିତ = ପାଉଁଶିଆ

ପାଉଁଶ + ଇଆ = ପାଉଁଶିଆ ବାଇଗଣ + ଇଆ = ବାଇଗଣିଆ

ସୋରିଷ + ଇଆ = ସୋରିଷିଆ ହଳଦୀ + ଇଆ = ହଳଦିଆ

(ଘ) ଅତିଶୟ ଅର୍ଥରେ, ଯେପରି ଅତିଶୟ ଲୁଣ ଯହିଁରେ = ଲୁଣିଆ

ଲୁଣ + ଇଆ = ଲୁଣିଆ ମୁନ + ଇଆ = ମୁନିଆ

(ଙ) ସଂଖ୍ୟା ବା ପରିମାଣ ଅର୍ଥରେ, ଯେପରି ଦଶହାତ ଲମ୍ବ ଯାହାର = ଦଶହାତିଆ

ଦଶହାତ + ଇଆ = ଦଶହାତିଆ ପାଞ୍ଚକେଜି + ଇଆ = ପାଞ୍ଚକେଜିଆ

(ଚ) ଅଛି ଅର୍ଥରେ, ଯେପରି କପଟ ଅଛି ଯାହାର କପଟିଆ, ଅନ୍ଧାର ଅଛି ଯେଉଁଠି = ଅନ୍ଧାରିଆ

କପଟ + ଇଆ = କପଟିଆ ଲାଙ୍ଗୁଡ଼ + ଇଆ = ଲାଙ୍ଗୁଡ଼ିଆ

ଜଟା + ଇଆ = ଜଟିଆ ଅନ୍ଧାର + ଇଆ = ଅନ୍ଧାରିଆ

**୨୫. ଉଆ ପ୍ରତ୍ୟୟ**

(କ) ଅଛି ଅର୍ଥରେ, ଯେପରି ପେଟ (ବଡ଼ପେଟ) ଅଛି ଯାହାର = ପେଟୁଆ

ପେଟ + ଉଆ = ପେଟୁଆ ଧାର + ଉଆ = ଧାରୁଆ

ପଙ୍କ + ଉଆ = ପଙ୍କୁଆ ନିଶ + ଉଆ = ନିଶୁଆ

ଘର + ଉଆ = ଘରୁଆ ଘାସ + ଉଆ = ଘାସୁଆ

(ଖ) ଜାତ ବା ସମ୍ବନ୍ଧୀୟ ଅର୍ଥରେ, ଯେପରି ଆଷାଢ଼ରେ ଜାତ ବା ଆଷାଢ଼ ସମ୍ବନ୍ଧୀୟ = ଆଷାଢୁଆ

ଆଷାଢ଼ + ଉଆ = ଆଷାଢୁଆ ବଣ + ଉଆ = ବଣୁଆ

ଦଳ + ଉଆ = ଦଳୁଆ ଝାଳ + ଉଆ = ଝାଳୁଆ

(ଗ) ବୃତ୍ତି (ଜୀବିକା) ଅର୍ଥରେ, ଯେପରି ସାପ ଖେଳାଇବା ବୃତ୍ତି ଯାହାର = ସାପୁଆ

ସାପ + ଉଆ = ସାପୁଆ ନାଟ + ଉଆ = ନାଟୁଆ

ଭାର + ଉଆ = ଭାରୁଆ ବାଣ + ଉଆ = ବାଣୁଆ

ହାଟ + ଉଆ = ହାଟୁଆ

(ଘ) ଅଭ୍ୟାସ ଅର୍ଥରେ, ଯେପରି ମାଡ଼ ଖାଇବା ଅଭ୍ୟାସ ଯାହାର = ମାଡ୍ରୁଆ

ମାଡ଼ + ଉଆ = ମାଡ୍ରୁଆ　　　　ଖଚ + ଉଆ = ଖଚୁଆ

ଲାଞ୍ଚ + ଉଆ = ଲାଞ୍ଚୁଆ　　　　ପେଞ୍ଚ + ଉଆ = ପେଞ୍ଚୁଆ

ମିଛ + ଉଆ = ମିଛୁଆ　　　　ମନ + ଉଆ = ମନୁଆ

**୨୬. ଆମି ପ୍ରତ୍ୟୟ**

ଭାବ ଅର୍ଥରେ, ଯେପରି ଠକର ଭାବ = ଠକାମି

ଠକ + ଆମି = ଠକାମି　　　　ପାଗଳ + ଆମି = ପାଗଳାମି

ଦୁଷ୍ଟ + ଆମି = ଦୁଷ୍ଟାମି　　　　ଭଣ୍ଡ + ଆମି = ଭଣ୍ଡାମି

**୨୭. ରା ପ୍ରତ୍ୟୟ**

ବୃତ୍ତି (ଜୀବିକା) ଅର୍ଥରେ, ଯେପରି ପାନ ବିକିବା ବୃତ୍ତି ଯାହାର = ପାନରା

ପାନ + ରା = ପାନରା　　　　ପାଟ + ରା = ପାଟରା

କାଚ + ରା = କାଚରା　　　　ଖଡ୍ଡୁ + ରା = ଖଡ୍ଡୁରା

**୨୮. ଖୋର ପ୍ରତ୍ୟୟ**

ଅଭ୍ୟାସ ଅର୍ଥରେ, ଯେପରି ଲାଞ୍ଚ ନେବା ଅଭ୍ୟାସ ଯାହାର = ଲାଞ୍ଚଖୋର

ଲାଞ୍ଚ + ଖୋର = ଲାଞ୍ଚ ଖୋର　　　　ଜିଦ୍ + ଖୋର = ଜିଦ୍‌ଖୋର

ନିଶା + ଖୋର = ନିଶାଖୋର　　　　ଯୁଦ୍ଧ + ଖୋର = ଯୁଦ୍ଧଖୋର

## ଅନୁଶୀଳନୀ

୧. ନିମ୍ନଲିଖିତ ତଦ୍ଧିତ ଶବ୍ଦଗୁଡ଼ିକର ମୂଳ ଶବ୍ଦ ଲେଖ ।

ଶଗଡ଼ିଆ, ବ୍ରହ୍ମପୁରୀ, ଢୋଲିଆ, ଦନ୍ତା, ଜଟିଆ, ପାଟରା, ପାର୍ବତ୍ୟ, କାୟିକ, ମହତ୍ତ୍ୱ, ଗରିମା, ବଳିଷ୍ଠ, ବୁଦ୍ଧିମାନ୍, ମାୟାବୀ, ଦୈତ୍ୟ, ସୈନ୍ଧବ, ବୃହତ୍ତମ, କଂସାରି, କାଠି, ହଳିଆ, ଧାରୁଆ, କ୍ଷୁଧିତ, ଶୈଶବ, ଚାଞ୍ଚଲ୍ୟ, ଶାରଦ, ବୈଷମ୍ୟ, ଗଣ୍ଡିଆ, ଗହଳି, ଆତିଥେୟ, କାଚରା, ଲାଘବ, ଶାରୀରିକ, ମାନବୀୟ,

ପୌରୋହିତ୍ୟ, ତୈଳ, ଜାତୀୟ, ଗାଙ୍ଗେୟ, ସୁଖୀ, ମାଟିଆ, ବାଣୁଆ, ସୌରଭ, ଦାର୍ଶନିକ, ସୌଜନ୍ୟ, ଓଷ୍ଠ୍ୟ, ଚୌର୍ଯ୍ୟ, ପୁଲକିତ, ଉତ୍ତରା, ଶିଙ୍ଗାଳ ।

୨. ନିମ୍ନଲିଖିତ ଶବ୍ଦଗୁଡ଼ିକରୁ ଗୋଟିଏ ଗୋଟିଏ ତଦ୍ଧିତ ଶବ୍ଦ ଗଠନ କର ।

ଚକ, କଟକ, ଠକ, ବଳ, ରୋମାଞ୍ଚ, ଡାକ୍ତର, ଭାର, ସାହିତ୍ୟ, ପୃଥିବୀ, ବିଶାଖା, ସୁନ୍ଦର, ଗୁଣ, ସଂପାଦକ, ଜଳ, ମିଛ, ପାନ, ପଲ୍ଲବ, ଚଇତ, ଅନ୍ଧାର, ସୁନା, ମହତ୍, ନୀଳ, କୁଜ, ଜାଲ, ହାଟ, ଜିଦ୍, ମାତୃ, ମେଧା, ଦୟା, ବଣିଜ, ତାଲୁ, ବିଷମ, ନରକ, ଅନୁରାଗ, ଗଙ୍ଗା, ଲୋଭ, ବିଷ୍ଣୁ, ପ୍ରଦେଶ, ବେଦ, ସମର୍ଥ, ଅସୁର, ଚିତ୍ରା, ଯଦୁ, ସଂସାର, ଗ୍ରାମ, ବଙ୍ଗ, ବଣ ।

୩. ଏକ ପଦରେ ପ୍ରକାଶ କର । (ଯେପରି ବାଣ ବିନ୍ଧିବା ଅଭ୍ୟାସ ଯାହାର= ବାଣୁଆ)

ବାଣ ବିନ୍ଧିବା ଅଭ୍ୟାସ ଯାହାର, ସହର ସହିତ ସମ୍ବନ୍ଧ ଯାହାର, ପୋଖରୀରେ ଜାତ, ଯେ ପିତାଙ୍କ ଭଳି, ବୀରର ଭାବ (ବୀରର ଗୁଣ ବା କର୍ମ), ଯାହା ଧୂଳିରେ ପରିଣତ, ପାଞ୍ଚହାତ ଲମ୍ବ ଯାହାର, ପାହାଡ଼ରେ ଜାତ, ବୁଦ୍ଧଙ୍କ ଭକ୍ତ ବା ଉପାସକ, ଶରୀର ସମ୍ବନ୍ଧୀୟ, ମୃଗଶିରା ନକ୍ଷତ୍ରର ସଂଯୋଗରେ ଯେଉଁ ମାସ, ସଂସାର ସମ୍ବନ୍ଧୀୟ, ଜମଦଗ୍ନିଙ୍କ ପୁତ୍ର, ବିଜ୍ଞାନରେ ଯେ ପ୍ରବୀଣ, ଗୁଣ ଅଛି ଯାହାର, ଶକୁନ୍ତଳାଙ୍କ ପୁତ୍ର, ମେଧା ଅଛି ଯେଉଁ ନାରୀର, ପଣ୍ଡିତଙ୍କର ଭାବ, ଗ୍ରାମରେ ଜାତ, ଗର୍ବ ଅଛି ଯାହାର, ଭଣ୍ଡର ଭାବ, ପାନ ବ୍ୟବସାୟ କରେ ଯେ, ମିଛ କହିବା ଅଭ୍ୟାସ ଯାହାର, ପଶ୍ଚିମ ଦିଗରୁ ଜାତ, ଗାଈ ଚରାଏ ଯେ, ଯୁଦ୍ଧ କରିବା ବା ଯୁଦ୍ଧ ଭିଆଇବା ଅଭ୍ୟାସ ଯାହାର, ଚଇତ ମାସରେ ଜାତ, ଯାହା ଭସ୍ମରେ ପରିଣତ, ପ୍ରିୟମାନଙ୍କ ମଧ୍ୟରେ ସବୁଠାରୁ ବେଶୀ ପ୍ରିୟ, ମହତ୍‌ର ଭାବ, ଗଣ୍ଠି ଅଛି ଯହିଁରେ, ଶଙ୍ଖା ବେପାର ଯାହାର, ପେଞ୍ଚ କରିବା ଅଭ୍ୟାସ ଯାହାର, ପାଗଳର ଭାବ, ନିଶ ଅଛି ଯାହାର, ମୁନିଙ୍କ ଭାବ, ତିଳରୁ ଜାତ, ପଶୁ ସମ୍ବନ୍ଧୀୟ, ତର୍କରେ ଯେ ପ୍ରବୀଣ, ପର୍ବତରେ ଜାତ, ଚୋରର କର୍ମ, ରାଷ୍ଟ୍ର ସମ୍ବନ୍ଧୀୟ, ତେଜ ଅଛି ଯାହାର, ବସୁଦେବଙ୍କ ପୁତ୍ର, ବନରେ ଜାତ, ବେଦ ସମ୍ବନ୍ଧୀୟ ।



# ସନ୍ଧି

ଭାଦ୍ର ମାସ ଚାରିଦିନ ଖୁବ୍ ଟାଣ ଅସ୍ରାଏ ପାଣି ବର୍ଷି ଛାଡ଼ିଗଲା । ଭାଦ୍ର ଉତ୍ତାରେ ଅଶିଣ ପ୍ରଥମରୁ ଲୋକେ ଜଳ ସକାଶେ କାତର ଭାବରେ ଆକାଶକୁ ଚାହିଁବାକୁ ଲାଗିଲେ । କାହାରି ମୁଖରୁ ଆଉ କୌଣସି କଥା ଶୁଣିବାକୁ ନାହିଁ, କେବଳ ଜଳ, ଜଳ । କାର୍ତ୍ତିକ ମାସ ଆରମ୍ଭରୁ ଲୋକେ ନିତାନ୍ତ ନିରାଶ ହୋଇପଡ଼ିଲେ । ଜଳ ହେଲେ ମଧ୍ୟ ଆଉ ରକ୍ଷା ନାହିଁ । ଧାନଗଛ ମରିବାକୁ ଲାଗିଲାଣି । ବାଲେଶ୍ୱର ଜିଲ୍ଲାରେ ଏକମାତ୍ର ଫସଲ ଧାନ, ସେହି ଗୋଟିଏ ମାତ୍ର ଫସଲ ଉପରେ ଲୋକଙ୍କ ଜୀବନ ନିର୍ଭର କରେ । ମୋ ଘରଠାରୁ ଅର୍ଦ୍ଧ ମାଇଲ ଦକ୍ଷିଣକୁ ବାଲେଶ୍ୱର ସହରର ଲୋକବସତି ଶେଷ । ସେହିଠାରୁ ଦିଗ୍‌ବଳୟ ସୀମା ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଧାନ୍ୟକ୍ଷେତ୍ର । ମଧ୍ୟରେ ମଧ୍ୟରେ ସମୁଦ୍ର ମଧ୍ୟଗତ ଦ୍ୱୀପ ସ୍ୱରୂପ ଗୋଟିଏ ଗୋଟିଏ ପୃଥକ୍ ପୃଥକ୍ ଗ୍ରାମ । ସେହି ସମୟରେ ପ୍ରତିଦିନ ପୂର୍ବାହ୍ଣ ନଅ ଘଣ୍ଟା ସମୟରେ ସ୍ନାନକରି ଖଣ୍ଡିଏ କମ୍ୱଳାସନ କାଖରେ ଜାକି ଏକାକୀ ଧାନ ବିଲକୁ ଯାଏଁ । ବିଲ ମଧ୍ୟରେ ଆସନ ପାରି ବସି ଈଶ୍ୱରଙ୍କଠାରେ ଲୋକମାନଙ୍କ ରକ୍ଷା ସକାଶେ ପ୍ରାର୍ଥନା କରେଁ ।

ଏଥିରେ ଥିବା ରେଖାଙ୍କିତ ପଦଗୁଡ଼ିକୁ ଲକ୍ଷ୍ୟ କର । ସେଗୁଡ଼ିକ ହେଲା- ପୂର୍ବାହ୍ଣ, କମ୍ୱଳାସନ, ଦିଗ୍‌ବଳୟ, ନିରବଚ୍ଛିନ୍ନ, ନିରାଶ ।

ଏଗୁଡ଼ିକ ଗୋଟିଏ ଗୋଟିଏ ଗୋଟିକିଆ ଶବ୍ଦ ପରି ମନେହେଉଥିଲେ ହେଁ ପ୍ରକୃତରେ ତାହା ନୁହେଁ । ପ୍ରତ୍ୟେକ ଦୁଇ ଦୁଇଟି ଶବ୍ଦର ମିଳନରେ ଗଠିତ ।

ପୂର୍ବ + ଅହ୍ଣ = ପୂର୍ବାହ୍ଣ     କମ୍ୱଳ + ଆସନ = କମ୍ୱଳାସନ

ଦିକ୍ + ବଳୟ = ଦିଗ୍‌ବଳୟ     ନିଃ + ଅବଚ୍ଛିନ୍ନ = ନିରବଚ୍ଛିନ୍ନ

ନିଃ + ଆଶ = ନିରାଶ

ଏଠାରେ 'ପୂର୍ବ'ର ଶେଷ ସ୍ୱରଟି 'ଅ' ଏବଂ 'ଅହ୍ନ'ର ଆଦ୍ୟ ସ୍ୱରଟି ମଧ୍ୟ 'ଅ' । ଏହି ଦୁଇଟି 'ଅ'ମିଳି 'ଆ'ରେ ପରିଣତ ହେବାଯୋଗୁଁ 'ପୂର୍ବ' ଓ 'ଅହ୍ନ' ମିଶି ପୂର୍ବାହ୍ନ ହୋଇଛି । ଏଥିରୁ ଜାଣିଲ ଯେ, ଅ + ଅ = ଆ

ସେହିପରି 'କମଳ'ର ଶେଷ ସ୍ୱର 'ଅ' ଏବଂ 'ଆସନ'ର ଆଦ୍ୟ ସ୍ୱର 'ଆ' । 'ଅ' ଓ 'ଆ' ମିଶି 'ଆ' ହେବା ଯୋଗୁଁ 'କମଳ' ଓ 'ଆସନ' ମିଶି 'କମଳାସନ' ହୋଇଛି । ଏଥିରୁ ଜାଣିଲ ଯେ, ଅ + ଆ = ଆ

'ଦିକ୍' ଓ 'ବଳୟ' ଶବ୍ଦ ଦୁଇଟିର ମିଳନରେ 'ଦିଗ୍‌ବଳୟ' ଗଠିତ । ଲକ୍ଷ୍ୟ କର ଯେ 'ଦିକ୍'ର ଶେଷରେ 'କ୍' ଓ 'ବଳୟ'ର ଆରମ୍ଭରେ 'ବ' ରହିଛି । ଏ ଉଭୟର ମିଳନ ଘଟିବାଯୋଗୁଁ 'କ୍' ବ୍ୟଂଜନଟି 'ଗ୍'ରେ ପରିଣତ ହୋଇଛି । ଏଥିରୁ ଜାଣିଲ ଯେ, କ୍ + ବ = ଗ୍‌ବ

'ନିରବଚ୍ଛିନ୍ନ' ଓ 'ନିରାଶ' ଶବ୍ଦ ଦୁଇଟି ଯଥାକ୍ରମେ 'ନିଃ' ଓ 'ଅବଚ୍ଛିନ୍ନ' ଏବଂ 'ନିଃ' ଓ 'ଆଶ' ଶବ୍ଦଗୁଡ଼ିକୁ ନେଇ ଗଠିତ । ଲକ୍ଷ୍ୟ କର ଯେ, ପ୍ରଥମ ଶବ୍ଦ 'ନିଃ'ର ଶେଷ ଧ୍ୱନି ବିସର୍ଗ (ଃ) ଏବଂ ଦ୍ୱିତୀୟ ଶବ୍ଦ 'ଅବିଚ୍ଛିନ୍ନ' ଓ 'ଆଶ'ର ପ୍ରଥମ ଧ୍ୱନି ସ୍ୱର (ଅ ଏବଂ ଆ) । ବିସର୍ଗ ସହିତ ସ୍ୱରର ମିଳନ ଫଳରେ ବିସର୍ଗ 'ର' ପାଲଟି ଯାଇଛି ।

ଉପର ଉଦାହରଣଗୁଡ଼ିକରୁ ଦେଖିଲ ଯେ ପ୍ରତ୍ୟେକଟିରେ ପ୍ରଥମ ଶବ୍ଦର ଶେଷ ଧ୍ୱନି ସହ ଦ୍ୱିତୀୟ ଶବ୍ଦର ଆଦ୍ୟ ଧ୍ୱନିର ମିଳନ ଘଟିଛି ଏବଂ ଏହି ମିଳନ ଫଳରେ କେତେକ ସ୍ଥଳରେ ଉଭୟ ଧ୍ୱନିର, ଆଉ କେତେକ ସ୍ଥଳରେ ଗୋଟିଏ ଧ୍ୱନିର ପରିବର୍ତ୍ତନ ହୋଇଛି ।

**ପ୍ରଥମ ଶବ୍ଦର ଶେଷ ଧ୍ୱନି ଓ ଦ୍ୱିତୀୟ ଶବ୍ଦର ଆଦ୍ୟ ଧ୍ୱନିର ମିଳନକୁ ସନ୍ଧି କୁହାଯାଏ ।**

## ସ୍ୱର ସନ୍ଧି

ପୂର୍ବେ ଦେଖିଛ, ପୂର୍ବାହ୍ନ = ପୂର୍ବ + ଅହ୍ନ

କମଳାସନ = କମଳ + ଆସନ

ଏଠାରେ ଯଥାକ୍ରମେ 'ଅ' ସହିତ 'ଅ'ର ଏବଂ 'ଅ' ସହିତ 'ଆ'ର ମିଳନ ହୋଇଛି । ଲକ୍ଷ୍ୟକର ଯେ ଉଭୟ ଉଦାହରଣରେ ପ୍ରଥମ ଶବ୍ଦର ଶେଷ ଏବଂ ଦ୍ୱିତୀୟ ଶବ୍ଦର ଆଦ୍ୟ ଧ୍ୱନି ସ୍ୱର । ଏହିପରି ଭାବରେ ଦୁଇଟି ସ୍ୱରଧ୍ୱନି ମଧ୍ୟରେ ଯେଉଁ ସନ୍ଧି ସାଧିତ ହୁଏ, ତାହା ସ୍ୱର ସନ୍ଧି । ଅର୍ଥାତ୍ **ଯେଉଁ ସନ୍ଧିରେ ପ୍ରଥମ ଶବ୍ଦର ଶେଷରେ ଓ ଦ୍ୱିତୀୟ ଶବ୍ଦର ମୂଳରେ ସ୍ୱରଧ୍ୱନି ଥାଏ, ତାହାକୁ ସ୍ୱରସନ୍ଧି କୁହାଯାଏ ।** ତଳେ ବିଭିନ୍ନ ପ୍ରକାର ସ୍ୱରସନ୍ଧିର ଆଲୋଚନା କରାଯାଇଛି ।

୧. ପୂର୍ବାହ୍ଣ = ପୂର୍ବ + ଅହ୍ଣ (ଅ + ଅ = ଆ)
କମଳାସନ = କମଳ + ଆସନ (ଅ + ଆ = ଆ)
ବିଦ୍ୟାଭ୍ୟାସ = ବିଦ୍ୟା + ଅଭ୍ୟାସ (ଆ + ଅ = ଆ)
ବିଦ୍ୟାଳୟ = ବିଦ୍ୟା + ଆଳୟ (ଆ + ଆ = ଆ)

ଏଠାରେ ପ୍ରଥମ ଶବ୍ଦଗୁଡ଼ିକରେ ଶେଷ ଧ୍ୱନି 'ଅ' ବା 'ଆ' । ଦ୍ୱିତୀୟ ଶବ୍ଦଗୁଡ଼ିକରେ ପ୍ରଥମ ଧ୍ୱନି ମଧ୍ୟ ସେହି 'ଅ' ବା 'ଆ' । ପ୍ରଥମ ଶବ୍ଦର 'ଅ' ବା 'ଆ' ସହିତ ଦ୍ୱିତୀୟ ଶବ୍ଦର 'ଅ' ବା 'ଆ' ମିଶି 'ଆ' ହୋଇଛି । ଏବଂ ଏହି 'ଆ' ପୂର୍ବ ବ୍ୟଞ୍ଜନ ସହିତ ଯୁକ୍ତ ହୋଇଛି । ଏହାର ନିୟମଟି ହେଲା,

**'ଅ' ବା 'ଆ' ପରେ 'ଅ' ବା 'ଆ' ଥିଲେ ଉଭୟ ମିଶି 'ଆ' ହୁଏ ଏବଂ ଏହି 'ଆ' ପୂର୍ବ ବ୍ୟଞ୍ଜନ ସହିତ ଯୁକ୍ତ ହୁଏ ।**

୨. ରବୀନ୍ଦ୍ର = ରବି + ଇନ୍ଦ୍ର (ଇ + ଇ = ଈ)
ପରୀକ୍ଷା = ପରି + ଈକ୍ଷା (ଇ + ଈ = ଈ)
ମହୀନ୍ଦ୍ର = ମହୀ + ଇନ୍ଦ୍ର (ଈ + ଇ = ଈ)
ଅବନୀଶ = ଅବନୀ + ଈଶ (ଈ + ଈ = ଈ)

ଏଇ ଉଦାହରଣଗୁଡ଼ିକରେ ପ୍ରଥମ ଶବ୍ଦଗୁଡ଼ିକର ଶେଷରେ ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ମୂଳରେ 'ଇ' ବା 'ଈ' ରହିଛି । ପ୍ରଥମ ଶବ୍ଦର ଶେଷରେ ଥିବା 'ଇ' ବା 'ଈ' ଏବଂ ଦ୍ୱିତୀୟ ଶବ୍ଦର ମୂଳରେ ଥିବା 'ଇ' ବା 'ଈ' ମିଶି 'ଈ' ହୋଇଛି । ଏହାର ନିୟମଟି ହେଲା-

**'ଇ' ବା 'ଈ' ପରେ 'ଇ' ବା 'ଈ' ଥିଲେ ଉଭୟ ମିଶି 'ଈ' ହୁଏ ଏବଂ ଏହି 'ଈ' ପୂର୍ବ ବ୍ୟଞ୍ଜନ ସହିତ ଯୁକ୍ତ ହୁଏ ।**

୩. କଟୂକ୍ତି = କଟୁ + ଉକ୍ତି (ଉ + ଉ = ଊ)

ସିନ୍ଧୂର୍ମି = ସିନ୍ଧୁ + ଊର୍ମି (ଉ + ଊ = ଊ)

ବଧୂତ୍ତମା = ବଧୂ + ଉତ୍ତମା (ଊ + ଉ = ଊ)

ଭୂର୍ଦ୍ଧ୍ୱ = ଭୂ + ଊର୍ଦ୍ଧ୍ୱ (ଊ + ଊ = ଊ)

ଏଠି ପ୍ରଥମ ଶବ୍ଦଗୁଡ଼ିକର ଶେଷ ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ଆଦ୍ୟରେ 'ଉ' ବା 'ଊ' ରହିଛି । ପ୍ରଥମ ଶବ୍ଦର ଏଇ 'ଉ' ବା 'ଊ' ସହିତ ଦ୍ୱିତୀୟ ଶବ୍ଦର 'ଉ' ବା 'ଊ' ମିଶି 'ଊ'ରେ ପରିଣତ ହୋଇଛି । ଏହାର ନିୟମଟି ହେଲା-

**'ଉ' ବା 'ଊ' ପରେ 'ଉ' ବା 'ଊ' ଥିଲେ ଉଭୟ ମିଶି 'ଊ' ହୁଏ ଏବଂ ଏହି 'ଊ' ପୂର୍ବବର୍ତ୍ତୀ ବ୍ୟଞ୍ଜନ ସହିତ ଯୁକ୍ତ ହୁଏ ।**

୪. ଶୁଭେଚ୍ଛା = ଶୁଭ + ଇଚ୍ଛା (ଅ + ଇ = ଏ)

ଗଣେଶ = ଗଣ + ଈଶ (ଅ + ଈ = ଏ)

ଯଥେଷ୍ଟ = ଯଥା + ଇଷ୍ଟ (ଆ + ଇ = ଏ)

ମହେଶ = ମହା + ଈଶ (ଆ + ଈ = ଏ)

ଏଠି ପ୍ରଥମ ଶବ୍ଦଗୁଡ଼ିକ ଶେଷରେ 'ଅ' ବା 'ଆ' ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ଆଦ୍ୟରେ 'ଇ' ବା 'ଈ' ରହିଛି । ଏହି 'ଅ' ବା 'ଆ' ଏବଂ 'ଇ' ବା 'ଈ' ମିଶି 'ଏ' ହୋଇଛି । ଏହାର ନିୟମଟି ହେଲା-

**'ଅ' ବା 'ଆ' ପରେ 'ଇ' ବା 'ଈ' ଥିଲେ ଉଭୟ ମିଶି 'ଏ' ହୁଏ । ଏହି 'ଏ' ପୂର୍ବ ବ୍ୟଞ୍ଜନ ସହିତ ଯୁକ୍ତହୁଏ ।**

୫. ଅର୍ଥୋପାର୍ଜନ = ଅର୍ଥ + ଉପାର୍ଜନ (ଅ + ଉ = ଓ)

ମହୋତ୍ସବ = ମହା + ଉତ୍ସବ (ଆ + ଉ = ଓ)

ଏଠି ପ୍ରଥମ ଶବ୍ଦଗୁଡ଼ିକ ଶେଷରେ 'ଅ' ବା 'ଆ' ଏବଂ ଦ୍ୱିତୀୟ ଶବ୍ଦର ଆରମ୍ଭରେ 'ଉ' ରହିଚି । ଏଇ 'ଅ' ବା 'ଆ' ସହିତ 'ଉ' ମିଳିତ ହୋଇ 'ଓ' ହୋଇଛି । ଏହାର ନିୟମଟି ହେଲା-

**'ଅ' ବା 'ଆ' ପରେ 'ଉ' ବା 'ଊ' ଥିଲେ ଉଭୟ ମିଶି 'ଓ' ହୁଏ । ଏଇ 'ଓ' ପୂର୍ବ ବ୍ୟଂଜନରେ ଯୁକ୍ତ ହୁଏ ।**

୬. ସପ୍ତର୍ଷି = ସପ୍ତ + ଋଷି (ଅ + ଋ = ଅର୍)

ମହର୍ଷି = ମହା + ଋଷି (ଆ + ଋ = ଅର୍)

ଏଠି ପ୍ରଥମ ଶବ୍ଦଗୁଡ଼ିକର ଶେଷରେ 'ଅ' ବା 'ଆ' ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ଆଦ୍ୟରେ 'ଋ' ରହିଚି । ଏହି 'ଅ' ବା 'ଆ' ସହିତ 'ଋ' ମିଶି 'ଅର୍' ହୋଇଛି ।

ଏହାର ନିୟମଟି ହେଲା-

**'ଅ' ବା 'ଆ' ପରେ 'ଋ' ଥିଲେ ଉଭୟ ମିଶି 'ଅର୍' ହୁଏ ଏବଂ ଏଇ 'ଅର୍' ପୂର୍ବ ବ୍ୟଞ୍ଜନ ସହ ଯୁକ୍ତ ହୁଏ ।** ଲେଖିଲାବେଳେ 'ର୍' 'ରେଫ୍' ରୂପରେ ପରବର୍ତ୍ତୀ ବ୍ୟଂଜନ ସହିତ ଯୁକ୍ତ ହୋଇଥାଏ ।

୭. ଜନୈକ = ଜନ + ଏକ (ଅ + ଏ = ଐ)

ମତୈକ୍ୟ = ମତ + ଐକ୍ୟ (ଅ + ଐ = ଐ)

ତଥୈବ = ତଥା + ଏବ (ଆ + ଏ = ଐ)

ମହୈଶ୍ୱର୍ଯ୍ୟ = ମହା + ଐଶ୍ୱର୍ଯ୍ୟ (ଆ + ଐ = ଐ)

ଏଇ ଉଦାହରଣଗୁଡ଼ିକରେ ପ୍ରଥମ ଶବ୍ଦ ଶେଷରେ 'ଅ' ବା 'ଆ' ଏବଂ ଦ୍ୱିତୀୟ ଶବ୍ଦ ଆରମ୍ଭରେ 'ଏ' ବା 'ଐ' ରହିଛି । ଏହି 'ଅ' ବା 'ଆ' ସହିତ 'ଏ' ବା 'ଐ' ମିଶି 'ଐ' ହୋଇଛି । ଏହାର ନିୟମଟି ହେଲା-

**'ଅ' ବା 'ଆ' ପରେ 'ଏ' ବା 'ଐ' ଥିଲେ ଉଭୟ ମିଶି 'ଐ' ହୁଏ । ଏହି 'ଐ' ପୂର୍ବ ବ୍ୟଂଜନରେ ଯୁକ୍ତ ହୁଏ ।**

୮. ବନୌଷଧି = ବନ + ଓଷଧି (ଅ + ଓ = ଔ)

ମହୌଷଧ = ମହା + ଔଷଧ (ଆ + ଔ = ଔ)

ଏଠି ପ୍ରଥମ ଶବ୍ଦଗୁଡ଼ିକ ଶେଷରେ 'ଅ' ବା 'ଆ' ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ଆରମ୍ଭରେ 'ଓ' ବା 'ଔ' ରହିଛି । ଏହି 'ଅ' ବା 'ଆ' ଏବଂ 'ଓ' ବା 'ଔ' ମିଶି 'ଔ' ହୋଇଛି । ଏହାର ନିୟମଟି ହେଲା-

**'ଅ' ବା 'ଆ' ପରେ 'ଓ' ବା 'ଔ' ଥିଲେ ଉଭୟ ମିଶି 'ଔ' ହୁଏ । ଏହି 'ଔ' ପୂର୍ବ ବ୍ୟଂଜନ ସହ ଯୁକ୍ତ ହୁଏ ।**

୯. ପ୍ରତ୍ୟହ = ପ୍ରତି + ଅହ
ଇତ୍ୟାଦି = ଇତି + ଆଦି
ବ୍ୟୁତ୍ପତ୍ତି = ବି + ଉତ୍ପତ୍ତି
ପ୍ରତ୍ୟେକ = ପ୍ରତି + ଏକ
ସୂଚ୍ୟଗ୍ର = ସୂଚୀ + ଅଗ୍ର

ଏଠି ପ୍ରଥମ ଶବ୍ଦଗୁଡ଼ିକ ଶେଷରେ 'ଇ' ବା 'ଈ' ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକ ଆରମ୍ଭରେ 'ଇ' ଓ 'ଈ' ଭିନ୍ନ ଅନ୍ୟ ସ୍ୱର (ଯଥା- ଅ, ଆ, ଉ, ଏ) ରହିଛି । ଏଇ 'ଇ' ବା 'ଈ' ସହିତ ଦ୍ୱିତୀୟ ଶବ୍ଦର 'ଇ' ଓ 'ଈ' ଭିନ୍ନ ଅନ୍ୟ ସ୍ୱରର ମିଳନ ଫଳରେ 'ଇ' 'ଈ' ରୂପ ବଦଳେଇ 'ୟ' ପାଲଟିଛି । ତେଣୁ ନିୟମଟି ହେଲା

**'ଇ' ବା 'ଈ' ପରେ 'ଇ' ଓ 'ଈ' ଭିନ୍ନ ଅନ୍ୟ କୌଣସି ସ୍ୱର ଥିଲେ 'ଇ' ବା 'ଈ' 'ୟ' (୍ୟ) ଫଳାରେ ପରିଣତ ହୁଏ ଏବଂ ଏହି 'ୟ' ଫଳା ସହିତ ପରବର୍ତ୍ତୀ ସ୍ୱର ଯୁକ୍ତ ହୁଏ ।**

୧୦. ଅନ୍ୱୟ = ଅନୁ + ଅୟ
ସ୍ୱାଗତ = ସୁ + ଆଗତ
ଅନ୍ୱିତ = ଅନୁ + ଇତ
ତନ୍ୱୀ = ତନୁ + ଈ
ଅନ୍ୱେଷଣ = ଅନୁ + ଏଷଣ

ଏଠି ପ୍ରଥମ ଶବ୍ଦଗୁଡ଼ିକ ଶେଷରେ 'ଉ' ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକ ମୂଳରେ 'ଉ' ଓ 'ଊ' ଭିନ୍ନ ଅନ୍ୟ ସ୍ୱର ରହିଛି । ଏହି 'ଉ' ସହିତ 'ଉ' ଓ 'ଊ' ଭିନ୍ନ ଅନ୍ୟ ସ୍ୱରଗୁଡ଼ିକ ମିଳିତ ହେବା ଫଳରେ 'ଉ' ହୋଇଯାଇଛି ୱ । ତେଣୁ ନିୟମଟି ହେଲା-

**'ଉ' ପରେ 'ଉ' ବା 'ଊ' ଭିନ୍ନ ଅନ୍ୟ କୌଣସି ସ୍ୱର ଥିଲେ 'ଉ' ହୋଇଯାଏ 'ୱ' । ଏବଂ ପରବର୍ତ୍ତୀ ସ୍ୱର ଏଇ 'ୱ' (୍ୱ) ଫଳା ସହିତ ମିଶିଯାଏ ।**

# ଅନୁଶୀଳନୀ

୧. ତଳ ବାକ୍ୟଗୁଡ଼ିକରେ ସ୍ୱର ସନ୍ଧି ହୋଇଥିବା ଅଂଶଗୁଡ଼ିକୁ ଚିହ୍ନାଇ ସେଗୁଡ଼ିକର ସନ୍ଧି ବିଚ୍ଛେଦ କର ।

(କ) ଭେଲୋର ଚିକିତ୍ସାଳୟରେ ବହୁ ଆଧୁନିକ ଯନ୍ତ୍ରପାତି ଅଛି ।

(ଖ) ତମେମାନେ ପ୍ରତ୍ୟହ ସୂର୍ଯ୍ୟୋଦୟ ପୂର୍ବରୁ ଉଠି କିଛିକିଛି ବିଦ୍ୟାଭ୍ୟାସ କରିବା ଉଚିତ ।

(ଗ) ପରୋପକାରୀ ବ୍ୟକ୍ତି ସର୍ବଜନାଦୃତ ହୁଏ ।

(ଘ) ଉଚ୍ଚାସନରେ ବସିବା ପରେ ତାଙ୍କର ଉତ୍ତରୋତ୍ତର ଉନ୍ନତି ଘଟିଛି ।

(ଙ) ସେମାନଙ୍କ ମଧ୍ୟରେ ମତୈକ୍ୟ ନରହିବା ଅତ୍ୟାଶ୍ଚର୍ଯ୍ୟ କଥା ।

୨. ତଳ ବାକ୍ୟଗୁଡ଼ିକରେ କଳା ଅକ୍ଷରଗୁଡ଼ିକୁ ସ୍ୱର ସନ୍ଧି ସାହାଯ୍ୟରେ ଯୁକ୍ତ କର ।

(କ) **ମହାଉଦଧିର** ଅନ୍ୟ ନାମ **ରତ୍ନଆକର** ।

(ଖ) ଆମ ବିଦ୍ୟାଳୟରେ **ସ୍ୱଅଧୀନତା** ଦିବସ ଜାକଜମକରେ ପାଳିତ ହୁଏ ।

(ଗ) ଏଇ ନାଟକ **ମହାଉତ୍ସବକୁ** **ଜଣଏକ** ବିଦେଶୀ ନାଟ୍ୟକାର ଆସିଛନ୍ତି ।

(ଘ) **ପଦଉନ୍ନତି** ଲାଭ **ଗିରିଈଶ** ବାବୁଙ୍କର ଏକ ମାତ୍ର **ଅଭିଇଷ୍ଟ** ଥିଲା ।

(ଙ) **ରାଜଋଷି** ଜନକ **ଅତିଅନ୍ତ** **ପରଉପକାରୀ** ରାଜା ଥିଲେ ।



# ବ୍ୟଞ୍ଜନ ସନ୍ଧି

ଦିଗନ୍ତ = ଦିକ୍ + ଅନ୍ତ

ସଦିଚ୍ଛା = ସତ୍ + ଇଚ୍ଛା

ଉନ୍ନତ = ଉତ୍ + ନତ

ଉଚ୍ଛୃଙ୍ଖଳ = ଉତ୍ + ଶୃଙ୍ଖଳ

ଏଠାରେ 'ଦିକ୍'ର ଶେଷ ବ୍ୟଞ୍ଜନ ବର୍ଣ୍ଣ 'କ୍' ସହିତ 'ଅନ୍ତ'ର ଆଦ୍ୟ ସ୍ୱର ବର୍ଣ୍ଣ 'ଅ' ମିଶି 'ଗ' ହୋଇଛି । ସେହିପରି 'ସତ୍'ର ଶେଷ ବ୍ୟଞ୍ଜନ 'ତ୍' ସହିତ 'ଇଚ୍ଛା'ର ଆଦ୍ୟ ସ୍ୱର 'ଇ' ମିଶି 'ଦି' ହୋଇଛି । ଏଠି ଲକ୍ଷ୍ୟ କର ଯେ ପ୍ରଥମ ଶବ୍ଦର ଶେଷରେ ବ୍ୟଞ୍ଜନ ବର୍ଣ୍ଣ ଏବଂ ଦ୍ୱିତୀୟ ଶବ୍ଦର ଆରମ୍ଭରେ ସ୍ୱର ବର୍ଣ୍ଣ ରହିଛି । ବର୍ଣ୍ଣ ଯାହା, ଧ୍ୱନି ତାହା । ଧ୍ୱନି ମୁଖରେ ଉଚ୍ଚାରିତ ହୁଏ, ବର୍ଣ୍ଣ ଲେଖାରେ ପ୍ରକାଶ ପାଏ ।

କିନ୍ତୁ ଶେଷ ଦୁଇଟି ଉଦାହରଣର କଥା ଭିନ୍ନ । 'ଉତ୍'ର ଶେଷରେ 'ତ୍', ଏବଂ 'ନତ' ଓ 'ଶୃଙ୍ଖଳ' ଆରମ୍ଭରେ ଯଥାକ୍ରମେ 'ନ' ଓ 'ଶ' ଅଛି । ଅର୍ଥାତ୍ ଏଠି ପ୍ରଥମ ଶବ୍ଦର ଶେଷ ଏବଂ ଦ୍ୱିତୀୟ ଶବ୍ଦର ଆଦ୍ୟରେ ଥିବା ଦୁଇଟିଯାକ ବର୍ଣ୍ଣ ବ୍ୟଂଜନ ବର୍ଣ୍ଣ ।

**ଯେଉଁ ସନ୍ଧିର ପ୍ରଥମ ଶବ୍ଦର ଶେଷରେ ବ୍ୟଞ୍ଜନ ଓ ଦ୍ୱିତୀୟ ଶବ୍ଦର ଆରମ୍ଭରେ ସ୍ୱର ବା ବ୍ୟଞ୍ଜନ ରହିଥାଏ, ତାହାକୁ ବ୍ୟଞ୍ଜନ ସନ୍ଧି କୁହାଯାଏ ।**

ବିଭିନ୍ନ ପ୍ରକାର ବ୍ୟଞ୍ଜନ ସନ୍ଧି ବିଷୟରେ ଆଲୋଚନା କରିବା ପୂର୍ବରୁ ତୁମେ ବର୍ଗ୍ୟ ବ୍ୟଞ୍ଜନଗୁଡ଼ିକର ବିଭାଗୀକରଣ ଜାଣିରଖିବା ଆବଶ୍ୟକ । ଏହା ଜାଣିଲେ କେତେକ ସନ୍ଧି କିପରି ସାଧିତ ହେଉଛି, ତାହା ବୁଝିବାରେ ସୁବିଧା ହେବ ।

କ୍, ଖ୍, ଗ୍, ଘ୍, ଙ୍ = କ ବର୍ଗ

ଚ୍, ଛ୍, ଜ୍, ଝ୍, ଞ୍ = ଚ ବର୍ଗ

ଟ୍, ଠ୍, ଡ୍, ଢ୍, ଣ୍ = ଟ ବର୍ଗ

ତ୍, ଥ୍, ଦ୍, ଧ୍, ନ୍ = ତ ବର୍ଗ

ପ୍, ଫ୍, ବ୍, ଭ୍, ମ୍ = ପ ବର୍ଗ

(ହଳନ୍ତ ଦେଇ ଲେଖିଲେ ଜଣାପଡ଼େ ଯେ ବ୍ୟଞ୍ଜନ ବର୍ଣ୍ଣରେ କୌଣସି ସ୍ୱର ମିଶିନାହିଁ ।) ପାଞ୍ଚଟି ବର୍ଗରେ ବିଭକ୍ତ ହୋଇଥିବାରୁ 'କ୍'ଠାରୁ 'ମ୍' ପର୍ଯ୍ୟନ୍ତ ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକୁ **ବର୍ଗ୍ୟବ୍ୟଞ୍ଜନ** କୁହାଯାଏ ।

ଏବେ କେତେକ ବ୍ୟଞ୍ଜନ ସନ୍ଧିର ଆଲୋଚନା କରିବା ।

୧. ଦିଗନ୍ତ = ଦିକ୍ + ଅନ୍ତ

ବାଗୀଶ = ବାକ୍ + ଈଶ

ସଦିଚ୍ଛା = ସତ୍ + ଇଚ୍ଛା

ସଦୁପାୟ = ସତ୍ + ଉପାୟ

ଷଡ଼ାନନ = ଷଟ୍ + ଆନନ

ସଦ୍‌ଗତି = ସତ୍ + ଗତି

ଉଦ୍‌ଘାଟନ = ଉତ୍ + ଘାଟନ

ଉଦ୍ଭିଦ = ଉତ୍ + ଭିଦ

ଉଦ୍‌ଯାପନ = ଉତ୍ + ଯାପନ

ଜୟଦ୍ରଥ = ଜୟତ୍ + ରଥ

ଏଠି ପ୍ରଥମ ଶବ୍ଦଗୁଡ଼ିକର ଶେଷରେ ବର୍ଗର ପ୍ରଥମ ବ୍ୟଞ୍ଜନ (ଯଥା- କ୍, ଟ୍, ତ୍) ଓ ଦ୍ୱିତୀୟ ଶବ୍ଦଗୁଡ଼ିକର ମୂଳରେ ସ୍ୱର ବର୍ଗର ତୃତୀୟ ଓ ଚତୁର୍ଥ ବ୍ୟଞ୍ଜନ କିମ୍ୱା 'ଯ୍', 'ର୍' ବ୍ୟଞ୍ଜନ ରହିଛି । ପ୍ରଥମ ଶବ୍ଦର ଶେଷରେ ଥିବା ବର୍ଗର ପ୍ରଥମ ବ୍ୟଞ୍ଜନ ସହିତ ଦ୍ୱିତୀୟ ଶବ୍ଦର ମୂଳରେ ଥିବା ସ୍ୱର, ବର୍ଗର ତୃତୀୟ, ଚତୁର୍ଥ ବ୍ୟଞ୍ଜନ ବା 'ଯ୍' ଓ 'ର୍' ମିଶିବାରୁ ବର୍ଗର ପ୍ରଥମ ବ୍ୟଞ୍ଜନଟି ସେହି ବର୍ଗର ତୃତୀୟ ବ୍ୟଞ୍ଜନରେ ପରିଣତ ହୋଇଛି । 'କ୍'ର ତୃତୀୟ ବ୍ୟଞ୍ଜନ 'ଗ', 'ଟ୍'ର ତୃତୀୟ ବ୍ୟଞ୍ଜନ 'ଡ୍', 'ତ୍'ର ତୃତୀୟ ବ୍ୟଞ୍ଜନ 'ଦ୍' ଇତ୍ୟାଦି ।

ଏହାର ନିୟମଟି ହେଲା-

**ବର୍ଗର ପ୍ରଥମ ବ୍ୟଞ୍ଜନ ପରେ ସ୍ୱର ବର୍ଗର ଦ୍ୱିତୀୟ, ଚତୁର୍ଥ ବ୍ୟଞ୍ଜନ ବା 'ଯ୍' 'ର୍' ଥିଲେ ବର୍ଗର ପ୍ରଥମ ବ୍ୟଞ୍ଜନଠାରେ ସେହି ବର୍ଗର ଦ୍ୱିତୀୟ ବ୍ୟଞ୍ଜନ ହୁଏ ।**

୨. ସଚ୍ଚରିତ୍ର = ସତ୍ + ଚରିତ୍ର

ଉଚ୍ଚାରଣ = ଉତ୍ + ଚାରଣ

ସଚ୍ଛାତ୍ର = ସତ୍ + ଛାତ୍ର

ଉଚ୍ଛେଦ = ଉତ୍ + ଛେଦ

ଏଠି ପ୍ରଥମ ଶବ୍ଦଗୁଡ଼ିକର ଶେଷରେ 'ତ୍' ଓ ଦ୍ୱିତୀୟ ଶବ୍ଦଗୁଡ଼ିକର ଆରମ୍ଭରେ 'ଚ୍' ବା 'ଛ' ଥିବାର ଦେଖୁଛ । ଏଇ 'ତ୍' ଦ୍ୱିତୀୟ ଶବ୍ଦର 'ଚ୍' ବା 'ଛ' ସହ ମିଶି 'ଚ୍'ରେ ପରିଣତ ହୋଇଛି ଏବଂ ଚ୍ + ଚ = ଚ୍ଚ ଏବଂ ଚ୍+ଛ = ଚ୍ଛ ହୋଇଛି । ଏହାର ନିୟମଟି ହେଲା-

**'ତ୍' ପରେ 'ଚ' ବା 'ଛ' ଥିଲେ 'ତ୍' ସ୍ଥାନରେ 'ଚ୍' ହୁଏ ଏବଂ ଏହି 'ଚ୍' ପରବର୍ତ୍ତୀ 'ଚ୍' ବା 'ଛ' ସହିତ ଯୁକ୍ତ ହୁଏ ।**

୩. ସଜ୍ଜନ = ସତ୍ + ଜନ

ଉଜ୍ଜ୍ୱଳ = ଉତ୍ + ଜ୍ୱଳ

ଉଜ୍ଜୀବିତ = ଉତ୍ + ଜୀବିତ

ଜଗଜ୍ଜନନୀ = ଜଗତ୍ + ଜନନୀ

ଏଠି ପ୍ରଥମ ଶବ୍ଦଗୁଡ଼ିକର ଶେଷରେ 'ତ୍' ଓ ଦ୍ୱିତୀୟ ଶବ୍ଦଗୁଡ଼ିକର ଆଦ୍ୟରେ 'ଜ୍' ରହିଛି ଏବଂ ଉଭୟର ସନ୍ଧି ହୋଇ 'ତ୍' ହୋଇଯାଇଛି 'ଜ୍' । ଏହାର ନିୟମଟି ହେଉଛି-

**'ତ୍' ପରେ 'ଜ୍' ଥିଲେ 'ତ୍' ସ୍ଥାନରେ 'ଜ୍' ହୁଏ, ଏବଂ ଏହି 'ଜ୍' ପରବର୍ତ୍ତୀ 'ଜ୍' ସହିତ ଯୁକ୍ତ ହୁଏ ।**

୪. ଉନ୍ନତି = ଉତ୍ + ନତି

ଉନ୍ନୟନ = ଉତ୍ + ନୟନ

ଜଗନ୍ନାଥ = ଜଗତ୍ + ନାଥ

ଚିନ୍ମୟ = ଚିତ୍ + ମୟ

ସନ୍ମାର୍ଗ = ସତ୍ + ମାର୍ଗ

ଏଠି ପ୍ରଥମ ଶବ୍ଦଗୁଡ଼ିକର ଶେଷରେ 'ତ୍' ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ମୂଳରେ 'ନ୍' ବା 'ମ୍' ରହିଛି । ଏହି 'ନ୍' ବା 'ମ୍' ସହିତ 'ତ୍' ମିଶି 'ନ୍'ରେ ପରିଣତ ହୋଇଛି । ତେଣୁ ଏହାର ନିୟମଟି ହେଲା-

**'ତ୍' ପରେ 'ନ୍' ବା 'ମ୍' ଥିଲେ 'ତ୍' ସ୍ଥାନରେ 'ନ୍' ହୁଏ ଏବଂ ଏହି 'ନ୍' ପରବର୍ତ୍ତୀ 'ନ୍' ବା 'ମ୍' ସହିତ ଯୁକ୍ତ ହୁଏ ।**

୫. ଉଲ୍ଲାସ = ଉତ୍ + ଲାସ

ଉଲ୍ଲଂଘନ = ଉତ୍ + ଲଂଘନ

ଉଲ୍ଲେଖ = ଉତ୍ + ଲେଖ

ବିଦ୍ୟୁଲ୍ଲତା = ବିଦ୍ୟୁତ୍ + ଲତା

ଏହି ଉଦାହରଣଗୁଡ଼ିକରେ ସବୁଠି ପ୍ରଥମ ଶବ୍ଦଗୁଡ଼ିକର ଶେଷରେ 'ତ୍' ଓ ଦ୍ୱିତୀୟ ଶବ୍ଦର ଆରମ୍ଭରେ 'ଲ' ରହିଛି ଏବଂ ଉଭୟ ପରସ୍ପର ସହ ମିଶିବା ହେତୁ 'ତ୍' ହୋଇଯାଇଛି 'ଲ' । ତେଣୁ ନିୟମଟି ହେଲା-

**'ତ୍' ପରେ 'ଲ୍' ଥିଲେ 'ତ୍' ସ୍ଥାନରେ 'ଲ୍' ହୁଏ ଏବଂ ଏହି 'ଲ୍' ପରବର୍ତ୍ତୀ 'ଲ' ସହିତ ଯୁକ୍ତ ହୁଏ ।**

୬. ଉଚ୍ଛୃଙ୍ଖଳ = ଉତ୍ + ଶୃଙ୍ଖଳ

ଉଚ୍ଛ୍ୱାସ = ଉତ୍ + ଶ୍ୱାସ

ଉଚ୍ଛିଷ୍ଟ = ଉତ୍ + ଶିଷ୍ଟ

ଏଠି ପ୍ରଥମ ଶବ୍ଦଗୁଡ଼ିକର ଶେଷରେ 'ତ୍' ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ଆରମ୍ଭରେ 'ଶ୍' ରହିଛି । ଏ ଉଭୟ ମିଶିବା ଫଳରେ 'ତ୍' 'ଚ୍'ରେ ପରିଣତ ହୋଇଛି ଏବଂ 'ଶ୍', 'ଛ'ରେ ପରିଣତ ହୋଇଛି । ଏହାର ନିୟମଟି ହେଲା-

**'ତ୍' ପରେ 'ଶ୍' ଥିଲେ 'ତ୍' ସ୍ଥାନରେ 'ଚ୍' ଏବଂ 'ଶ୍' ସ୍ଥାନରେ 'ଛ୍' ହୁଏ । ଏହି 'ଚ୍' ଓ 'ଛ୍' ମିଶି 'ଚ୍ଛ' ହୋଇଯାଏ ।**

୭. ଉଦ୍ଧତ = ଉତ୍ + ହତ

ଉଦ୍ଧାର = ଉତ୍ + ହାର

ତଦ୍ଧିତ = ତତ୍ + ହିତ

ଏଠି ପ୍ରଥମ ଶବ୍ଦଗୁଡ଼ିକର ଶେଷରେ 'ତ୍' ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ଆଦ୍ୟରେ 'ହ' ରହିଛି । 'ତ୍' ହୋଇଯାଇଛି 'ଦ୍' ଏବଂ 'ହ' ହୋଇଯାଇଛି 'ଧ' । ଏହାର ନିୟମଟି ହେଲା-

**'ତ୍' ପରେ 'ହ୍' ଥିଲେ 'ତ୍' ସ୍ଥାନରେ 'ଦ୍' ଏବଂ 'ହ୍' ସ୍ଥାନରେ 'ଧ୍' ହୁଏ । ଏହି 'ଦ୍' ଓ 'ଧ୍' ମିଶି 'ଦ୍ଧ' ହୋଇଯାଏ ।**

୮. ସଙ୍କୀର୍ଣ୍ଣ = ସମ୍ + କୀର୍ଣ୍ଣ

ସଙ୍ଗୀତ = ସମ୍ + ଗୀତ

ସଞ୍ଚୟ = ସମ୍ + ଚୟ

ସଞ୍ଜୟ = ସମ୍ + ଜୟ

ସନ୍ତୋଷ = ସମ୍ + ତୋଷ

ସମ୍ପୂର୍ଣ୍ଣ = ସମ୍ + ପୂର୍ଣ୍ଣ

ସନ୍ଦେହ = ସମ୍ + ଦେହ

ଏଠି ପ୍ରଥମ ଶବ୍ଦଗୁଡ଼ିକ ଶେଷରେ 'ମ୍' ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ଆରମ୍ଭରେ ବିଭିନ୍ନ ବର୍ଗର ବ୍ୟଞ୍ଜନ ରହିଛି । ଏହି 'ମ୍' ବିଭିନ୍ନ ବର୍ଗର ବ୍ୟଞ୍ଜନ ସହ ମିଶିଲା ବେଳେ ସେହି ସେହି ବର୍ଗର ପଞ୍ଚମ ବ୍ୟଞ୍ଜନରେ ଅର୍ଥାତ୍ ଙ୍, ଞ୍, ଣ୍, ନ୍, ମ୍ ରେ ପରିଣତ ହୋଇ ପରବର୍ତ୍ତୀ ବ୍ୟଞ୍ଜନଗୁଡ଼ିକ ସହିତ ମିଶି ଯାଇଛି । ଯଥା- ଙ୍ + କ = ଙ୍କ, ଙ୍+ଗ= ଙ୍ଗ, ଞ୍+ଚ= ଞ୍ଚ, ଞ୍+ଜ=ଞ୍ଜ ଇତ୍ୟାଦି । ଏହାର ନିୟମଟି ହେଲା-

**'ମ୍' ପରେ କୌଣସି ବର୍ଗ୍ୟ ବ୍ୟଞ୍ଜନ ଥିଲେ 'ମ୍' ସ୍ଥାନରେ ଉକ୍ତ ବର୍ଗର ପଞ୍ଚମ ବ୍ୟଞ୍ଜନ ହୁଏ ଏବଂ ଏହି ପଞ୍ଚମ ବ୍ୟଞ୍ଜନ ବର୍ଣ୍ଣ ପରବର୍ତ୍ତୀ ବ୍ୟଞ୍ଜନ ସହ ଯୁକ୍ତହୁଏ ।**

ଲେଖିବାବେଳେ ଏହି ପଞ୍ଚମ ବ୍ୟଞ୍ଜନ ସ୍ଥାନରେ ଅନୁସ୍ୱାର ମଧ୍ୟ ବ୍ୟବହାର କରାଯାଇପାରେ । ଯଥା- ସଙ୍କୀର୍ଣ୍ଣ-ସଂକୀର୍ଣ୍ଣ, ସଞ୍ଜୟ-ସଂଜୟ, ସଞ୍ଚୟ-ସଂଚୟ, ସନ୍ତୋଷ-ସଂତୋଷ, ସମ୍ପୂର୍ଣ୍ଣ-ସଂପୂର୍ଣ୍ଣ ।

# ଅନୁଶୀଳନୀ

୧. ତଳ ବାକ୍ୟଗୁଡ଼ିକରେ ବ୍ୟଞ୍ଜନ ସନ୍ଧି ହୋଇଥିବା ରେଖାଙ୍କିତ ପଦଗୁଡ଼ିକର ସନ୍ଧି ବିଚ୍ଛେଦ କର ।

(କ) ଗୌତମ ସନ୍ନ୍ୟାସ ନେବା କଥା ଜାଣି ଯଶୋଧାରାଙ୍କ ହୃଦୟ ଦୁଃଖରେ ଉଦ୍‌ବେଳିତ ହୋଇଉଠିଲା ।

(ଖ) ପୁଅ ବିଦେଶରୁ ଫେରୁଛି ଶୁଣି ଉଲ୍ଲାସରେ ବିଧୁବାବୁଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା ।

(ଗ) ଉଚ୍ଛୃଙ୍ଖଳ ପିଲାମାନେ ହିଁ ଶିକ୍ଷକଙ୍କ ଆଦେଶ ଉଲ୍ଲଙ୍ଘନ କରନ୍ତି ।

(ଘ) ସଚ୍ଚିଦାନନ୍ଦ ଭଗବାନ ତୁମକୁ ସବୁ ବିପଦରୁ ରକ୍ଷା କରିବେ ।

(ଙ) ଗୁରୁଙ୍କ ସଦୁପଦେଶ ଶିଷ୍ୟ ହୃଦୟରେ ଜ୍ଞାନର ଦିଗନ୍ତ ଉଦ୍‌ଘାଟନ କରିଦେଲା ।

୨. ତଳ ବାକ୍ୟଗୁଡ଼ିକରେ ରେଖାଙ୍କିତ ଅଂଶଗୁଡ଼ିକୁ ବ୍ୟଞ୍ଜନ ସନ୍ଧି ସାହାଯ୍ୟରେ ଯୁକ୍ତ କର ।

(କ) ଗୁରୁଜନଙ୍କ ସତ୍‌ଇଚ୍ଛା ଓ ନିଜର ଉତ୍‌ଯୋଗ ବଳରେ ମଣିଷ ବଡ଼ ହୁଏ ।

(ଖ) ଭକ୍ତ ଜଣକ ତତ୍‌ମୟ ହୋଇ ବାକ୍‌ଦେବୀଙ୍କ ପୂଜା କରୁଥିଲେ ।

(ଗ) ରାଜୁ ଅତି ଉତ୍‌ହତ ହୋଇଯିବା ଯୋଗୁଁ ତତ୍‌ଜନିତ ଦୁଃଖରେ ତା ବାପା ଭାଙ୍ଗିପଡ଼ିଲେ ।

(ଘ) ସମ୍‌ତାନଙ୍କ ଉତ୍‌ନତିରେ ବାପା ମାଆ ଖୁସି ହୁଅନ୍ତି ।

(ଙ) ସମ୍‌ତୋଷ ଓ ସତ୍ ଆଚାର ମଣିଷ ଜୀବନକୁ ସାର୍ଥକ କରେ ।



# ବିସର୍ଗ ସନ୍ଧି

ନିରାଶ = ନିଃ + ଆଶ

ପୁନର୍ଜନ୍ମ = ପୁନଃ + ଜନ୍ମ

ଶିରୋଧାର୍ଯ୍ୟ = ଶିରଃ + ଧାର୍ଯ୍ୟ

ଏଇ ଉଦାହରଣଗୁଡ଼ିକରେ ପ୍ରଥମ ଶବ୍ଦ ଶେଷରେ ସବୁଠାରେ ବିସର୍ଗ (ଃ) ରହିଛି । ପ୍ରଥମ ଉଦାହରଣଟିରେ ବିସର୍ଗ 'ର୍'ରେ ପରିଣତ ହୋଇଛି ଏବଂ ଏହି 'ର୍' ପରବର୍ତ୍ତୀ 'ଆ' ମିଶି 'ରା' ହୋଇଛି । ଦ୍ୱିତୀୟ ଉଦାହରଣଟିରେ ମଧ୍ୟ ବିସର୍ଗ 'ର୍'ରେ ପରିଣତ ହୋଇଛି ଏବଂ ଏହି 'ର୍' ପରବର୍ତ୍ତୀ ବ୍ୟଞ୍ଜନ ଉପରେ 'ରେଫ୍' ରୂପରେ ବ୍ୟବହୃତ ହୋଇଛି । ତୃତୀୟ ଉଦାହରଣଟିରେ ବିସର୍ଗ ଓ ତାର ପୂର୍ବବର୍ତ୍ତୀ ସ୍ୱର 'ଅ' ମିଶି 'ଓ' ହୋଇଛି । ଏହି 'ଓ' ପୂର୍ବ ବ୍ୟଂଜନ 'ର' ସହିତ ମିଶି 'ରୋ' ହୋଇଯାଇଛି । ଏହାର ନିୟମଟି ହେଲା-

**ଯେଉଁ ସନ୍ଧିରେ ପ୍ରଥମ ଶବ୍ଦର ଶେଷରେ ବିସର୍ଗ ଓ ଦ୍ୱିତୀୟ ଶବ୍ଦର ଆରମ୍ଭରେ ସ୍ୱର ବା ବ୍ୟଞ୍ଜନ ଥାଏ, ତାକୁ ବିସର୍ଗ ସନ୍ଧି କୁହାଯାଏ ।**

ତଳେ ବିଭିନ୍ନ ପ୍ରକାର ବିସର୍ଗ ସନ୍ଧିର ଉଦାହରଣ ଦିଆଗଲା ।

୧. ନିଶ୍ଚୟ = ନିଃ + ଚୟ

ନିଶ୍ଚିତ = ନିଃ + ଚିତ

ନିଶ୍ଚଳ = ନିଃ + ଚଳ

ଦୁଶ୍ଚିନ୍ତା = ଦୁଃ + ଚିନ୍ତା

ଶିରଚ୍ଛେଦ = ଶିରଃ + ଛେଦ

ଏଇ ଉଦାହରଣଗୁଡ଼ିକରେ ସବୁଠି ପ୍ରଥମ ଶବ୍ଦର ଶେଷ ବର୍ଣ୍ଣଟି ବିସର୍ଗ ଏବଂ ଦ୍ୱିତୀୟ ଶବ୍ଦର ପ୍ରଥମ ବର୍ଣ୍ଣ 'ଚ' ବା 'ଛ' । ଏହାର ନିୟମଟି ହେଲା-

**ବିସର୍ଗ ପରେ 'ଚ' ବା 'ଛ' ଥିଲେ ବିସର୍ଗଟି 'ଶ୍' ହୋଇଯାଏ ଏବଂ ଏହି 'ଶ୍' 'ଚ' ବା 'ଛ' ସହିତ ମିଶି 'ଶ୍ଚ' ବା 'ଶ୍ଛ' ହୁଏ ।**

୨. ଇତସ୍ତତଃ = ଇତଃ + ତତଃ

ମନସ୍ତାପ = ମନଃ + ତାପ

ନିସ୍ତାର = ନିଃ + ତାର

ନିସ୍ତେଜ = ନିଃ + ତେଜ

ଦୁସ୍ତର = ଦୁଃ + ତର

ଏଠାରେ ପ୍ରଥମ ଶବ୍ଦଗୁଡ଼ିକର ଶେଷରେ ବିସର୍ଗ ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ଆରମ୍ଭରେ 'ତ୍' ରହିଥିବାରୁ ପ୍ରଥମ ଶବ୍ଦର ଶେଷରେ ଥିବା ବିସର୍ଗଟି 'ସ୍' ହୋଇଛି ଏବଂ ଏହି 'ସ୍' ଟି 'ତ୍' ସହିତ ମିଶି 'ସ୍ତ' ହୋଇଛି । ଏହାର ନିୟମଟି ହେଲା-

**ବିସର୍ଗ ପରେ 'ତ୍' ଥିଲେ ବିସର୍ଗଟି 'ସ୍' ହୋଇଯାଏ ଏବଂ ଏହି 'ସ୍' ପରବର୍ତ୍ତୀ 'ତ୍' ସହିତ ମିଶି 'ସ୍ତ' ହୁଏ ।**

୩. ବାଚସ୍ପତି = ବାଚଃ + ପତି

ପୁରସ୍କାର = ପୁରଃ + କାର

ନମସ୍କାର = ନମଃ + କାର

ମନସ୍କାମ = ମନଃ + କାମ

ଏଠାରେ ପ୍ରଥମ ଶବ୍ଦଗୁଡ଼ିକର ଶେଷରେ ବିସର୍ଗ ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ଆରମ୍ଭରେ 'ପ' ବା 'କ' ରହିଛି । ବିସର୍ଗଟି 'ସ୍'ରେ ପରିଣତ ହୋଇ ପରବର୍ତ୍ତୀ 'କ' ବା 'ପ' ସହିତ ମିଶି 'ସ୍ପ' ଓ 'ସ୍କ' ହୋଇଛି । ଏହାର ନିୟମଟି ହେଲା-

**ବିସର୍ଗ ପରେ 'ପ' ବା 'କ' ଥିଲେ ବିସର୍ଗଟି 'ସ୍' ହୋଇଯାଏ ଏବଂ ଏହି 'ସ୍' ପରବର୍ତ୍ତୀ 'କ' ଓ 'ପ' ସହିତ ମିଶି 'ସ୍ପ' ଓ 'ସ୍କ'ରେ ପରିଣତ ହୁଏ ।**

୪. ଦୁଷ୍ପ୍ରାପ୍ୟ = ଦୁଃ + ପ୍ରାପ୍ୟ

ଚତୁଷ୍ପଦ = ଚତୁଃ + ପଦ

ନିଷ୍ଫଳ = ନିଃ + ଫଳ

ନିଷ୍କାସନ = ନିଃ + କାସନ

ପରିଷ୍କାର = ପରିଃ + କାର

ବହିଷ୍କାର = ବହିଃ + କାର

ଏଠାରେ ପ୍ରଥମ ଶବ୍ଦଗୁଡ଼ିକ ଶେଷରେ ବିସର୍ଗ ଥିଲେ ହେଁ ସବୁଠାରେ ତା ପୂର୍ବରେ 'ଇ' ବା 'ଉ' ରହିଛି । ଦ୍ୱିତୀୟ ଶବ୍ଦଗୁଡ଼ିକର ଆରମ୍ଭରେ 'ପ', 'ଫ' ଓ 'କ' ରହିଛି । ବିସର୍ଗଟି 'ଷ୍' ହୋଇଛି ଏବଂ ପରବର୍ତ୍ତୀ 'ପ', 'ଫ' ଓ 'କ' ସହିତ ମିଶି ଯଥାକ୍ରମେ ଷ୍ପ, ଷ୍ଫ ଓ ଷ୍କ ହୋଇଛି । ତେଣୁ ନିୟମଟି ହେଲା–

**ବିସର୍ଗ ପୂର୍ବରେ 'ଇ' ବା 'ଉ' ଥାଇ ପରେ 'ପ' 'ଫ' ବା 'କ' ଥିଲେ ବିସର୍ଗ ସ୍ଥାନରେ 'ଷ୍' ହୁଏ । ଏହି 'ଷ୍' ପରବର୍ତ୍ତୀ 'ପ' 'ଫ' ଓ 'କ' ସହିତ ମିଶି ଯଥାକ୍ରମେ 'ଷ୍ପ', 'ଷ୍ଫ' ଓ 'ଷ୍କ'ରେ ପରିଣତ ହୁଏ ।**

୫. ମନୋରମ = ମନଃ + ରମ

ମନୋହର = ମନଃ + ହର

ମନୋରଞ୍ଜନ = ମନଃ + ରଞ୍ଜନ

ଅଧୋମୁଖ = ଅଧଃ + ମୁଖ

ଅଧୋଗତି = ଅଧଃ + ଗତି

ତପୋବନ = ତପଃ + ବନ

ଶିରୋମଣି = ଶିରଃ + ମଣି

ଏଠାରେ ପ୍ରଥମ ଶବ୍ଦଗୁଡ଼ିକର ଶେଷରେ ବିସର୍ଗ ଥିଲେ ହେଁ ସବୁଠି ତା ପୂର୍ବରୁ 'ଅ' ଧ୍ୱନି ରହିଛି ଏବଂ ପରେ ବର୍ଗର ତୃତୀୟ, ଚତୁର୍ଥ, ପଞ୍ଚମ ବ୍ୟଞ୍ଜନ ବା 'ର୍' 'ହ୍' ରହିଛି । ପୂର୍ବର 'ଅ' ଏବଂ ବିସର୍ଗ ମିଶି 'ଓ'ରେ ପରିଣତ ହୋଇଛି । ଏହାର ନିୟମଟି ହେଲା–

**ବିସର୍ଗ ପୂର୍ବେ 'ଅ' ଏବଂ ପରେ ବର୍ଗର ତୃତୀୟ, ଚତୁର୍ଥ, ପଞ୍ଚମ ବ୍ୟଂଜନ ବା 'ର', 'ହ' ଥିଲେ ବିସର୍ଗ ଓ ତା ପୂର୍ବର 'ଅ' ମିଶି 'ଓ'ରେ ପରିଣତ ହୁଏ । ଏହି 'ଓ' ପୂର୍ବ ବ୍ୟଂଜନ ସହିତ ଯୁକ୍ତ ହୁଏ ।**

୬. ପୁନର୍ମିଳନ = ପୁନଃ + ମିଳନ

ପୁନର୍ଜନ୍ମ = ପୁନଃ + ଜନ୍ମ

ପୁନରୁକ୍ତି = ପୁନଃ + ଉକ୍ତି

ଅନ୍ତର୍ଗତ = ଅନ୍ତଃ + ଗତ

ଅନ୍ତର୍ଭୁକ୍ତ = ଅନ୍ତଃ + ଭୁକ୍ତ

ଅନ୍ତର୍ଯାମୀ = ଅନ୍ତଃ + ଯାମୀ

ସ୍ୱର୍ଗତ = ସ୍ୱଃ + ଗତ

ଏଠାରେ ପ୍ରଥମ ଶବ୍ଦଗୁଡ଼ିକ ହେଲା 'ପୁନଃ', 'ଅନ୍ତଃ' ଓ 'ସ୍ୱଃ' । ଦ୍ୱିତୀୟ ଶବ୍ଦଗୁଡ଼ିକର ଆରମ୍ଭରେ ସ୍ୱର, ବର୍ଗର ତୃତୀୟ ବ୍ୟଞ୍ଜନ, ଚତୁର୍ଥ ବ୍ୟଞ୍ଜନ, ପଞ୍ଚମ ବ୍ୟଞ୍ଜନ ବା 'ହ' 'ଲ' ଓ 'ଯ' ମଧ୍ୟରୁ କୌଣସି ବର୍ଣ୍ଣ ରହିଛି । ପୁନଃ, ଅନ୍ତଃ ଓ ସ୍ୱଃ- ଏଗୁଡ଼ିକର 'ବିସର୍ଗ' 'ର୍'ରେ ପରିଣତ ହୋଇଛି । ଦ୍ୱିତୀୟ ଶବ୍ଦର ଆରମ୍ଭରେ ଯେଉଁଠି ସ୍ୱର ଅଛି, ସେଠାରେ ଏହି 'ର୍' ତାହା ସହିତ ଯୁକ୍ତ ହୋଇଛି ଏବଂ ଯେଉଁଠି ବ୍ୟଞ୍ଜନ ଅଛି, ସେଠାରେ 'ର୍' ସେହି ବ୍ୟଞ୍ଜନ ଉପରେ 'ରେଫ୍' ରୂପେ ଲିଖିତ ହୋଇଛି । ତେଣୁ ଏହାର ନିୟମଟି ହେଲା-

'ପୁନଃ', 'ଅନ୍ତଃ' ଓ 'ସ୍ୱଃ' ପ୍ରଭୃତି କେତେକ ଶବ୍ଦର ପରେ ସ୍ୱର, ବର୍ଗର ତୃତୀୟ, ଚତୁର୍ଥ ବା ପଞ୍ଚମ ବ୍ୟଞ୍ଜନ ବା 'ଯ', 'ଲ', 'ହ', ଥିଲେ ଉକ୍ତ ଶବ୍ଦଗୁଡ଼ିକରେ ଥିବା ବିସର୍ଗ, 'ର୍' ରେ ପରିଣତ ହୁଏ । ଏହି 'ର୍' ପରବର୍ତ୍ତୀ ସ୍ୱର ସହିତ ଯୁକ୍ତ ହୁଏ ବା ପରେ ବ୍ୟଞ୍ଜନ ଥିଲେ ସେହି ବ୍ୟଞ୍ଜନ ଉପରେ ରେଫ୍ ରୂପେ ଲିଖିତ ହୁଏ ।

୭. ନିରନ୍ତର = ନିଃ + ଅନ୍ତର

ଦୁରଭିସନ୍ଧି = ଦୁଃ + ଅଭିସନ୍ଧି

ନିରାଶ୍ରୟ = ନିଃ + ଆଶ୍ରୟ

ନିରୀକ୍ଷଣ = ନିଃ + ଈକ୍ଷଣ

ଚତୁର୍ଦ୍ଦିଗ = ଚତୁଃ + ଦିଗ

ଦୁର୍ନୀତି = ଦୁଃ + ନୀତି

ନିର୍ଜନ = ନିଃ + ଜନ

ଆବିର୍ଭାବ = ଆବିଃ + ଭାବ

ଦୁର୍ଯୋଗ = ଦୁଃ + ଯୋଗ

ଦୁର୍ଲଭ = ଦୁଃ + ଲଭ

ଏଇ ଉଦାହରଣଗୁଡ଼ିକରେ ବିସର୍ଗର ପୂର୍ବରୁ 'ଇ' ବା 'ଉ' ଏବଂ ପରେ ସ୍ୱର, ବର୍ଗର ତୃତୀୟ, ଚତୁର୍ଥ, ପଞ୍ଚମ ବ୍ୟଞ୍ଜନ କିମ୍ବା 'ଯ', 'ଲ' ରହିଛି । ବିସର୍ଗଟି 'ର୍' ହୋଇ ପରବର୍ତ୍ତୀ ସ୍ୱର ସହିତ ମିଶିଛି କିମ୍ବା ପରବର୍ତ୍ତୀ ବ୍ୟଞ୍ଜନ ଉପରେ ରେଫ୍ ହୋଇଛି । ଏହାର ନିୟମଟି ହେଲା-

**'ବିସର୍ଗ' ପୂର୍ବରୁ 'ଇ' ବା 'ଉ' ଥିଲେ ଏବଂ ପରେ କୌଣସି ସ୍ୱର, ବର୍ଗର ତୃତୀୟ, ଚତୁର୍ଥ, ପଞ୍ଚମ ବ୍ୟଞ୍ଜନ ବା 'ଯ' 'ଲ' ଥିଲେ 'ବିସର୍ଗ'ଟି 'ର୍' ହୋଇଯାଏ । 'ର୍' ପରେ ସ୍ୱର ଥିଲେ ଏହା ସେହି ସ୍ୱର ସହିତ ଯୁକ୍ତ ହୁଏ । ମାତ୍ର ପରବର୍ତ୍ତୀ ବର୍ଣ୍ଣଟି ବ୍ୟଞ୍ଜନ ହୋଇଥିଲେ ଏହି 'ର୍' ତାହା ଉପରେ 'ରେଫ୍' ରୂପେ ଲେଖାଯାଏ ।**

୮. ନୀରସ = ନିଃ + ରସ

ନୀରନ୍ଧ୍ର = ନିଃ + ରନ୍ଧ୍ର

ନୀରୋଗ = ନିଃ + ରୋଗ

ନୀରବ = ନିଃ + ରବ

ଏଇ ଉଦାହରଣଗୁଡ଼ିକରେ ପ୍ରଥମ ଶବ୍ଦ ହେଉଛି 'ନିଃ' ଏବଂ ଦ୍ୱିତୀୟ ଶବ୍ଦଗୁଡ଼ିକର ଆରମ୍ଭରେ ସବୁଠି 'ର' ରହିଛି । 'ନିଃ' ସ୍ଥାନରେ 'ନୀ' ହୋଇଛି । ଏହାର ନିୟମଟି ହେଲା-

**'ନିଃ' ପରେ 'ର' ଥିଲେ 'ନିଃ' ସ୍ଥାନରେ 'ନୀ' ହୁଏ ।**

## ଅନୁଶୀଳନୀ

୧. ତଳ ବାକ୍ୟଗୁଡ଼ିକରେ ବିସର୍ଗ ସନ୍ଧି ହୋଇଥିବା କଳା ଅକ୍ଷର ପଦଗୁଡ଼ିକର ସନ୍ଧି ବିଚ୍ଛେଦ କର ।

(କ) **ଦୁର୍ଜନ** ସବୁଠି **ତିରସ୍କାର** ପାଏ ।

(ଖ) ମୁନି, ଋଷିମାନେ **ନିଷ୍କାମ, ନିରାଡମ୍ବର** ଓ **ନିରଳସ** ଭାବରେ ଜୀବନ ଯାପନ କରନ୍ତି ।

(ଗ) **ନିରାକାର** ଈଶ୍ୱରଙ୍କୁ ନମସ୍କାର କରି ତାଙ୍କ **ଆଶୀର୍ବାଦ** ପାଇବାକୁ ଚେଷ୍ଟାକର ।

(ଘ) **ଦୁର୍ନୀତି** ଅଭିଯୋଗରେ ଅଭିଯୁକ୍ତ ହେବା ପରେ ହୀରାଲାଲ୍‌ବାବୁ କୁଆଡ଼େ **ଅନ୍ତର୍ଧାନ** ହୋଇଗଲେ ।

(ଙ) ଏବେ ମଣି ଖାଲି **ଦୁର୍ମୂଲ୍ୟ** ନୁହେଁ, **ଦୁଷ୍ପ୍ରାପ୍ୟ** ମଧ୍ୟ ।

୨. ବିସର୍ଗ ସନ୍ଧିଗତ ଅଶୁଦ୍ଧି ଥିଲେ ସଂଶୋଧନ କର ।

(କ) ଠାକୁରେ ତୁମ **ସତ୍ତୁଦ୍ୟମ** ସଫଳ କରିବେ ।

(ଖ) ଆର୍ଥିକ **ଦୁରାବସ୍ଥା** ଓ ଦୁର୍ଗତିର ସମ୍ମୁଖୀନ ହେଲା ପରେ ତାର **ପ୍ରାର୍ଦୁର୍ଭାବ** ବଢ଼ିଯାଇଛି ।

(ଗ) ଭୃତ୍ୟର **ର୍ଦୁବିନୀତ** ଆଚରଣ ଦେଖି ରାଜା ତାକୁ ଦଣ୍ଡ ଦେଲେ ।

(ଘ) **ତପବନଟି ର୍ଦୁମତିମାନଙ୍କର** ଆଡ୍‌ଡ଼ାରେ ପରିଣତ ହେଲାଣି ।

(ଙ) **ସଜ୍ଜନ**ମାନଙ୍କୁ **ଜଗନାଥ**ଙ୍କ କରୁଣା ମିଳୁଥାଉ ।



# ଆମ ଓଡ଼ିଶା

କେଡ଼େ ମଧୁମୟ ସୁନ୍ଦର ଆମ ଓଡ଼ିଶା ଭୂଇଁ
ମହୋଦଧି ସେବା କରଇ ଯାର ଚରଣ ଛୁଇଁ ।
ମହାନଦୀ ଇବ ବ୍ରାହ୍ମଣୀ ବଇତରଣୀ ଆଦି
ପୟଦାନେ ଜୀବେ ପାଳନ୍ତି ପୁଣ୍ୟସଲିଳା ନଦୀ ।
ଧାନ ମୁଗ ବିରି କୋଳଥ ଆଖୁ ଆଦି ଫସଲ
ଉପୁଜାଏ ଆମ ଓଡ଼ିଶା ଯାହା ଧନ ଅସଲ ।
ମେଘାସନ ଗନ୍ଧମାର୍ଦ୍ଦନ ଖଣ୍ଡଗିରି ଧଉଳି
ପାହାଡ଼ ପର୍ବତ ଶୋଭନ୍ତି କେତେ ମୁକୁଟ ଭଳି ।
ଜାଇ ଯୂଇ ମଲ୍ଲୀ ମାଳତୀ ଚମ୍ପା ହେନା ସେବତୀ
କେତେ ଜାତି ଫୁଲ ଫୁଟିଣ ବାସେ ମନ ମୋହନ୍ତି ।
ଦଶହରା ରଥଯାତରା ନୂଆଖାଇ ପରବ
ସୁଖେ ନରନାରୀ ପାଳନ୍ତି ରଜ ଦୋଳ ଉତ୍ସବ ।
ବ୍ରହ୍ମପୁର ପାଟ ବସନ ଶାଢ଼ି ସମ୍ବଲପୁରୀ
କଟକର ତାରକସି ତ ଗଉରବ ଆମରି ।
ଓଡ଼ିଆ ଭାଷାର ମହିମା କେ ବା ପାରିବ କହି
ବୁଦ୍ଧଦେବ ଯାହା ପଢ଼ିଲେ ମନେ ଆଦର ବହି ।
ଶୂଦ୍ରମୁନି କବିସମ୍ରାଟ ଅତିବଡ଼ୀ ଆବର
କବିସୂର୍ଯ୍ୟ ଆଦି କବିଏ ରହିଛନ୍ତି ଅମର ।
ଗୋପବନ୍ଧୁ ମଧୁବାବୁଙ୍କ ନାମ ନ ଜାଣେ କିଏ
ଓଡ଼ିଶା ମାଆର ସନ୍ତାନ ବୀର ସୁରେନ୍ଦ୍ର ସାଏ ।
କେତେ ବର ପୁତ୍ର କନ୍ୟାଙ୍କୁ ମାଆ ପାଳିଛି କୋଳେ
ସୁମରନ୍ତି ଗୁଣ ତାଙ୍କର ଜନେ ଆନନ୍ଦ ଭୋଳେ ।
ହିନ୍ଦୁ ଇସଲାମ ଖ୍ରୀଷ୍ଟାନ ଆମେ ଓଡ଼ିଶାବାସୀ
ମାଆର ଗୌରବ ରଖିବା ସର୍ବେ ଆନନ୍ଦେ ମିଶି ।





ଓଡ଼ିଆ ଭାଷା-ସାହିତ୍ୟରେ ବ୍ୟାକରଣକାର, ଭାଷାତତ୍ତ୍ୱବିତ୍, ଅନୁବାଦକ, ରମ୍ୟରଚନା ଲେଖକ, ପ୍ରାବନ୍ଧିକ ଓ ସାହିତ୍ୟ-ଆଲୋଚକ ଭାବରେ ଡକ୍ଟର ଧନେଶ୍ୱର ମହାପାତ୍ର (୧୯୩୨) ସୁପରିଚିତ। ବ୍ୟାକରଣ ପୁସ୍ତକ 'ସୁଗମ ବ୍ୟାକରଣ', 'ଆଧୁନିକ ଓଡ଼ିଆ ବ୍ୟାକରଣ' ଓ ' ଠିକ୍ ପଢ଼ ଠିକ୍ ଲେଖ'ର ସେ ରଚୟିତା। ଓଡ଼ିଶା ସାହିତ୍ୟ ଏକାଡେମୀର ସର୍ବୋଚ୍ଚ ସମ୍ମାନ 'ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର' ସେ ପାଇଛନ୍ତି। ସ୍କୁଲପିଲାଙ୍କୁ ଓଡ଼ିଆ ବ୍ୟାକରଣ ବିଷୟରେ ଅବଗତ କରିବା ପାଇଁ 'ଆମ ଓଡ଼ିଶା' ଡକ୍ଟର ମହାପାତ୍ରଙ୍କର 'ଆମ ଓଡ଼ିଆ ବ୍ୟାକରଣ' ପୁସ୍ତକର ପ୍ରଥମ ଭାଗ ଆଗରୁ ପ୍ରକାଶ କରିଥିଲା। ଏବେ ଏହାର ଦ୍ୱିତୀୟ ଭାଗ ପ୍ରକାଶିତ ହେଉଛି। ଆଶା, ପ୍ରଥମ ଭାଗ ଭଳି ଏହା ମଧ୍ୟ ଛାତ୍ରଛାତ୍ରୀ ଓ ଶିକ୍ଷକଶିକ୍ଷୟିତ୍ରୀଙ୍କର ଆଦର ଲାଭ କରିବ।

ଆମ ଓଡ଼ିଶା
ĀMA ODISHĀ


ISBN 938421313-6
9 789384 213138